# ଦେବ୍ୟାସ୍ୱାଗର

( ଐତିହାସିକ ନାଟକ )

ପ୍ରଣେତା ଓ ପ୍ରକାଶକ

ଶ୍ରୀ ଦୁର୍ଗାମାଧବ ପ୍ରସାଦ ସିଂହ ଦେଓ

ରାଜା, ମଦନପୁର-ରାମପୁର କଳାହାଣ୍ଡି ଷ୍ଟେଟ

ପ୍ରଥମ ସଂସ୍କରଣ



PRINTER-R. N. RATH.
THE SATYABADI PRESS,
CUTTACK.

1932

ମୂଲ୍ୟ ୪ ୫ ୪ ବାରଅଣା ମାତ୍ର



## ଉତ୍ସର୍ଗ ପତ୍ର

ପରମାରାଧ୍ୟା ପରମ ପୂଜନୀୟା

ଜନନୀ ମହୋଦୟାଙ୍କ

ଶ୍ରୀ ଚରଣ ତଳେ

ବିନୟାବନତ

ଅଧମ ପୁତ୍ର



# ଅଭିମତ



କଳାହାଣ୍ଡି ଅନ୍ତର୍ଗତ ମଦନପୁର ରାମପୁରର ରାଜା ଦୁର୍ଗାମାଧବ ପ୍ରସାଦସିଂହ ଦେବଙ୍କ ପ୍ରଣୀତ 'ଜ୍ୟୋସ୍ନା' ନାଟକର ପାଣ୍ଡୁଲେଖା ପାଠ କରି ପୂର୍ଣ୍ଣମାତ୍ରାରେ ଆନନ୍ଦ ଲାଭ କରିଅଛି । ରାଜା ମହୋଦୟ ସୁଦୂର ଅରଣ୍ୟ ମଧ୍ୟରେ ଅବସ୍ଥାନ କରି ଉତ୍କଳ ସାହିତ୍ୟର ଏ ଭଳି ବିଶିଷ୍ଟ ଚର୍ଚ୍ଚା କରୁଅଛନ୍ତି ଦେଖି କିଏ ଆନନ୍ଦିତ ନ ହେବେ ? 'ରାଜସ୍ଥାନ' ବର୍ଣ୍ଣିତ ଐତିହାସିକ ତଥ୍ୟ ସମ୍ବଳିତ ରାଜକୁମାରୀ ଜ୍ୟୋସ୍ନାଙ୍କର ସମସ୍ତ ଗୁଣରାଶି ଏ ପୁସ୍ତକର ଲିପି କୌଶଳରେ ପାଠକଙ୍କୁ ଚୁମ୍ବକାକର୍ଷଣରେ ଟାଣି ନିଏ । ଏ ନାଟକରେ ମନୁଷ୍ୟକୁ ନିର୍ଜୀବ କରିବାର କିଛି ନାହିଁ, ମନୁଷ୍ୟ ଜୀବନର କର୍ତ୍ତବ୍ୟ ଏ ଗ୍ରନ୍ଥରେ ଅତି ଦକ୍ଷତାର ସହିତ ପ୍ରଦର୍ଶିତ । ଏଥିରେ ସନ୍ଦେହର ଅବକାଶ ନାହିଁ । ବର୍ଣ୍ଣନାର କମନୀୟତା ଏବଂ ସୁଶ୍ରାବ୍ୟ ଭାଷାରେ ଗ୍ରନ୍ଥ ଖଣ୍ଡିକ ଅତ୍ୟନ୍ତ ପୂର୍ଣ୍ଣ ।

କାଳୀଗଳି, କଟକ
୧୯।୧।୧୯୩୬



ଶ୍ରୀ ଶଶିଭୂଷଣ ରାୟ

# ଗ୍ରନ୍ଥ ପରିଚୟ

ଭାରତରେ ବୀର ରାଜପୁତ ଜାତିର ଗୌରବମୟ ଇତିହାସ କ୍ଷତ୍ରିୟ କୁଳର ତଥା ଭାରତର ଶ୍ରେଷ୍ଠ ସମ୍ପଦ । ଏଥିରେ ଅସାଧାରଣ ସ୍ୱଦେଶ ପ୍ରେମ, ଅଲୌକିକ ବୀରତ୍ୱ, ଅସୀମ ତ୍ୟାଗର ଚିତ୍ର ଲିପିବଦ୍ଧ ହୋଇ ରହିଛି । ମହୋଦଧିକୁ ମନ୍ଥନ କରି ଅମୃତ କାଢ଼ିଲା ପରି ରାଜପୁତ କାହାଣୀର ଅମୃତମୟ ଇତିହାସ ଯେତେ ବେଶି ଆଲୋଚିତ ହେବ ତାହାର ସେତିକି ଅଧିକ ମହତ୍ତ୍ୱ ପରିସ୍ଫୁଟ ହେବ, ଦେଶ ସେଥିରୁ ସେତିକି ଅଧିକ ପ୍ରେରଣା ଓ ଶିକ୍ଷା ପାଇବ ।

କଳାହାଣ୍ଡି ମଧ୍ୟବର୍ତ୍ତୀ ମଦନପୁର-ରାମପୁରର ଯୁବକ ରାଜା ଶ୍ରୀ ଦୁର୍ଗାମାଧବ ପ୍ରସାଦ ସିଂହ ଦେଓଙ୍କର ସେହି କ୍ଷତ୍ରିୟକୁଳ ଓ ରାଜ-ବଂଶରେ ଜନ୍ମ । ସେ ଯେ ଆଧୁନିକ ଶିକ୍ଷା ପାଇ ତାଙ୍କର ସେହି ଜାତି-ଗୌରବରେ ଅନୁପ୍ରାଣିତ ହୋଇ ଏ ନାଟକ ଲେଖିଛନ୍ତି ଏଥିରେ ସନ୍ଦେହ ନାହିଁ ।

'ଜ୍ୟୋତ୍ସ୍ନାବାଈ' ନାଟକ ରାଜପୁତାନାର କାଗା ନଦୀ କୂଳସ୍ଥ ରାଜ୍ୟର ଟଡସ୍ ରାଜସ୍ଥାନ ବର୍ଣ୍ଣିତ ଐତିହାସିକ ଘଟଣାର ଛାୟାବଲମ୍ବନରେ ଲିଖିତ । ଯଶୋଲ୍ମୀ ଦୁର୍ଗରୁ ରାଜା ବିଜୟ ସିଂହଙ୍କୁ ଦୁର୍ଜ୍ଜନ ସିଂହ ବିତାଡ଼ିତ କରି ତାଙ୍କ

କନ୍ୟା ଜ୍ୟୋତ୍ସ୍ନାଙ୍କୁ ବନ୍ଦୀ କଲେ ଏବଂ ତାଙ୍କୁ ବିବାହ କରିବାକୁ ପ୍ରସ୍ତାବକଲେ । ଜ୍ୟୋତ୍ସ୍ନା ପିତୃଦ୍ରୋହୀ ଓ ରାଜଦ୍ରୋହୀର ଏ ପ୍ରସ୍ତାବରେ ତୀବ୍ର ପ୍ରତିବାଦ କଲେ । ସଖୀ ସୁପ୍ରଭା ତାଙ୍କୁ ମୁକ୍ତକରି ନେବାର ପ୍ରସ୍ତାବ କରିବାରେ ବୀରବାଳା ଜ୍ୟୋତ୍ସ୍ନା ପଦ୍ମିନୀ ପ୍ରମୁଖ ରାଜପୁତ ରମଣୀଙ୍କ ପନ୍ଥାରେ ନିଜର ସତୀତ୍ୱ ଓ ମହତ୍ତ୍ୱ ରକ୍ଷାକରି ରାଜପୁତ ବଂଶର ମାନ ରକ୍ଷାପାଇଁ ସଂକଳ୍ପ କଲେ ଏବଂ ତହିଁର ଆଦର୍ଶ ମଧ୍ୟ ଦେଖାଇ ଦେଲେ । ଦୁର୍ଜ୍ଜନଙ୍କ କୁଶାସନ ଫଳରେ ରାଜ୍ୟରେ ବିଦ୍ରୋହ ହେଲା । ଜ୍ୟୋତିଃ ସିଂହ ବିଜୟ ସିଂହଙ୍କ ବିଶ୍ୱସ୍ତ ସେନାପତି ରୂପେ ରାଜ୍ୟୋଦ୍ଧାର କଲେ ଏବଂ ଜ୍ୟୋତ୍ସ୍ନାକୁ ମୁକ୍ତକଲେ । ବିଜୟସିଂହ ଯଶୋଲକ୍ଷ୍ମୀ ଦୁର୍ଗ ଫେରିପାଇ ଜ୍ୟୋତିଃ ସିଂହଙ୍କୁ ନିଜ କନ୍ୟା ଜ୍ୟୋତ୍ସ୍ନାଙ୍କସହ ରାଜ ମୁକୁଟ ଅର୍ପଣ କରି ରାଜର୍ଷି ରୂପେ ବାନପ୍ରସ୍ଥ ଆଚରଣ କଲେ । ଜ୍ୟୋତିଃ ସିଂହ ପରମ ପ୍ରଜାପାଳକ ରୂପେ କ୍ଷତ୍ରିୟର ଆଦର୍ଶ ଶାସନ ପ୍ରତିଷ୍ଠା କଲେ । ଏହାହିଁ ମୋଟା ମୋଟି ନାଟକର ବିଷୟ ।

ଲେଖକ ରାଜା ସାହେବଙ୍କର ଏହା ପ୍ରଥମ ଲେଖା । ମୁଁ ଯେତେବେଳେ ନିଜେ ନାଟ୍ୟ ସାହିତ୍ୟ ବିଷୟରେ ସେପରି ବିଜ୍ଞ ନୁହେଁ, ସେତେବେଳେ ଏହାର ସେ ଦୃଷ୍ଟିରୁ ଦୋଷଗୁଣ ବାରିବି କପରି ? ତେବେ ସେ ଯେ ଦେଶବାସୀଙ୍କ ଆଗରେ ଐତିହାସିକ ଭିତ୍ତିରେ କ୍ଷତ୍ରିୟର ସୁଶାସନ ଓ କ୍ଷତ୍ରିୟ ଧର୍ମର ମହତ୍ତ୍ୱ ଦେଖାଇବାକୁ ଚେଷ୍ଟା କରିଛନ୍ତି ଏହା ତାଙ୍କପରି ରାଜପୁରୁଷ ପକ୍ଷରେ ଗୌରବ ଓ ପ୍ରଶଂସାର କଥା । ଆଧୁନିକ ଓଡ଼ିଆ ରାଜାମାନଙ୍କ ଭିତରେ ଏ ପ୍ରକାର ସାହିତ୍ୟ ଚର୍ଚ୍ଚା

ବଡ଼ ଅଳ୍ପ ଦେଖା ଯାଏ । ସେ ଯେ ସୁଦୂର ବନପର୍ବତ ପୂର୍ଣ୍ଣ ରାଜ୍ୟରେ ରହି ଏଭଳି ବାଣୀଦେବୀଙ୍କ ଆରାଧନା କରି ଓଡ଼ିଆ ଭାଷା ଓ ସାହିତ୍ୟକୁ ଅଲଙ୍କୃତ କରୁଛନ୍ତି ବଡ଼ ଆନନ୍ଦର କଥା । ପୃଥିବୀର ପ୍ରତ୍ୟେକ ସାହିତ୍ୟରେ ନାଟ୍ୟକଳା ଏକ ଉତ୍କୃଷ୍ଟ କଳା । ଚରିତ୍ରର ପ୍ରକୃତର ଚରିତ୍ର ଭୂଲରେ ଚରିତ୍ର ପରି ନାଟ୍ୟକାର ମାନବ ସମାଜର ଚରିତ୍ରକୁ ନାଟ୍ୟସାହିତ୍ୟ ସାହାଯ୍ୟରେ ରଙ୍ଗମଞ୍ଚରେ ଜୀବନ୍ତ ରୂପ ଦିଅନ୍ତି । ଇଂରେଜୀ ଭାଷା ପ୍ରଭୃତି ପୃଥିବୀର ସବୁ ଉତ୍କୃଷ୍ଟ ସାହିତ୍ୟ ବିଶେଷରେ ନାଟ୍ୟ ସାହିତ୍ୟରେ ପରିପୁଷ୍ଟ । ଓଡ଼ିଆ ଭାଷାରେ ସେ ନାଟ୍ୟ ସାହିତ୍ୟର ବଡ଼ ଅଭାବ । ରାଜା ଶ୍ରୀଦୁର୍ଗା ମାଧବଙ୍କର ସେ କ୍ଷେତ୍ରରେ ଏ ପ୍ରଥମ ଉଦ୍ୟମ ଯଥାର୍ଥ ଆଦର ପାଇଲେ ସେ ଉତ୍ସାହିତ ହେବେ, ସନ୍ଦେହ ନାହିଁ ।

କଟକ
୨୩ । ୧ । ୧୯୩୩

ଶ୍ରୀ ରାଧାନାଥ ରଥ

# ଭୂମିକା

"ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ"

ଏହି ପଦକ ଯେ କେତେଦୂର ହୃଦୟଗ୍ରାହୀ ଓ ପ୍ରାଚୀନ ମନୀଷୀଗଣ ଏ ଶ୍ଳୋକ ପଦକରେ ଜନ୍ମଭୂମିକୁ କେତେ ଗୌରବମୟ ଓ ଉଚ୍ଚ ସ୍ଥାନରେ ରଖି ହୃଦୟର ଭକ୍ତି ଦେଇଛନ୍ତି ତାହା ଉଲ୍ଲିଖିତ ଶ୍ଳୋକରୁ ସ୍ପଷ୍ଟ ପ୍ରତୀୟମାନ ହେଉଅଛି । ଏହି ନାଟକରେ ମାତୃଭୂମି ଭାରତର ଯଶୋଲକ୍ଷ୍ମୀର ଉଦ୍ଧାର ଏବଂ ତହିଁର ଗୌରବମୟ ବର୍ଣ୍ଣନା ଚିତ୍ରିତ କରାଯାଇଛି ।

ଏହି ନାଟକଟିରେ ଭାରତୀୟ ରାଜପୁତଗଣଙ୍କ ସ୍ୱଦେଶ ବତ୍ସଳତା ଓ ବୀରରମଣୀଗଣଙ୍କ ମାତୃଭୂମି ଏବଂ ସତୀତ୍ୱ ରକ୍ଷାର ପରାକାଷ୍ଠା, ବୀର ଯୁବକଗଣଙ୍କ ଧର୍ମୋଦ୍ଦୀପକତା, ଦେଶଦ୍ରୋହୀର ପତନ, ଦେଶସେବୀର ଆତ୍ମୋତ୍ସର୍ଗ ଓ ରାଜ ଗୌରବ ଲାଭର ଆଦର୍ଶ ଚରିତ ଏ "ଜୈୟାସ୍ନାବାଈ" ନାଟକର ଛନ୍ଦେ ଛନ୍ଦେ ପ୍ରତିଫଳିତ କରାଯାଇଛି ।

ମୋର ସହୃଦୟ ପାଠକପାଠିକାଗଣଙ୍କୁ ଅନୁରୋଧ ଯେ ଏହି ସଂସ୍କରଣର ତ୍ରୁଟି ମାର୍ଜ୍ଜନାପୂର୍ବକ ସାଦରେ ଗ୍ରହଣକଲେ ନିଜର ଶ୍ରମ ସାର୍ଥକ ମଣିବି କରିବ ।

ମଦନପୁର ରାମପୁର ଦୁର୍ଗ
ବିଜୟା-ଦଶମୀ
ତା ୯-୧୦-୧୯୩୨ ସାଲ

ଶ୍ରୀ ଦୁର୍ଗାମାଧବ ପ୍ରସାଦ ସିଂହ ଦେଓ

# ପରିଚୟ

## ପୁରୁଷଗଣ

ଦୁର୍ଜ୍ଜନ ସିଂହ—ବିଜେତା ରାଜା ଓ ଯଶୋଲ୍ମୀର ବିଧର୍ମୀରାଜପୁତ ସେନାପତି
ଶରଣ ସିଂହ ,, ମନ୍ତ୍ରୀ
ରତନ ସିଂହ ,, ସରକାରୀ ସେନାପତି
ଦୂତ
ପ୍ରହରୀ ୧ମ, ୨ୟ
ସିପାହୀ ୧ମ, ୨ୟ, ୩ୟ ଓ ୪ର୍ଥ
ସୈନ୍ୟଗଣ
କଟୁଆଲ
ବାଦକଦ୍ୱୟ
ବିଜୟସିଂହ ଯଶୋଲ୍ମୀର ରାଜା
କୃପାଲସିଂହ ,, ମନ୍ତ୍ରୀ
ରଣଜିତସିଂହ ,, ସେନାପତି
ଶମ୍ଭୁନାଥ ଶାସ୍ତ୍ରୀ ,, ରାଜଗୁରୁ
ସଦାନନ୍ଦ ଶର୍ମା ... ,, ବିଦୂଷକ
ସୈନ୍ୟଗଣ—ଦୂତ—ପ୍ରହରୀ, ୧ମ ସୈନିକ ଓ ୨ୟ ସୈନିକ—
ନାଗରିକ ୧ମ—୨ୟ—୩ୟ ଓ ୪ର୍ଥ

ଦୀନଦୟାଳ, ହରଗୋପାଳ ସେଠ, ହରିନାଥ,
ରାମଧନ ପାଣ୍ଡେ, ଗୋପାଳଚନ୍ଦ୍ର ଭୂମ୍ୟଧିକାରୀ,
ବକ୍ସ ରାମଦାସ ଓ ପ୍ରଭୁ ଦୟାଳ } ଜ୍ୟୋତିଃ ସିଂହର ସଙ୍ଗୀଗଣ

ଜ୍ୟୋତିଃସିଂହ ... ଯଶୋଲ୍ମୀର ଭୂତପୂର୍ବ ସେନାପତିଙ୍କ ପୁତ୍ର
ସୈନ୍ୟଗଣ ରାଜପୁତ ବିଦ୍ରୋହୀ ସୈନିକଚୟ

## ସ୍ତ୍ରୀଗଣ

କ୍ୟୋସ୍ନାବାଈ — ଯଶୋଲ୍ମୀର ରାଜକୁମାରୀ ବିଜୟସିଂହଙ୍କ କନ୍ୟା

ନର୍ମଦା
ଲଳିତା } ସଖୀଦ୍ୱୟ

ବେଶ୍ୟାଦ୍ୱୟ

ପୁରଜନ ପୁରଜନୀଗଣ

ରାଜକୁମାରୀର ସଖୀ ଚତୁଷ୍ଟୟ



# ଜ୍ୟୋତ୍ସ୍ନାବାଈ



## ପ୍ରଥମ ଅଙ୍କ

### ପ୍ରଥମ ଦୃଶ୍ୟ

( ସ୍ଥାନ-କାଗା ନଦୀତୀରସ୍ଥ ଭୂମି । )

( ଅଦୂରେ ବୃକ୍ଷ ଶାଖାରେ ଝୁଲୁଥିବା, ଶବଦୃଶ୍ୟ ସ୍ୱର୍ଗୀୟ ସେନାପତିଙ୍କ ପୁତ୍ର ଜ୍ୟୋତିଃ ସିଂହ କେତେକ ସଙ୍ଗୀଗଣସହ କଥୋପକଥନ ହୋଇ ପ୍ରବେଶ । )

ଦୀନ ଦୟାଳ—ଶୁଣିଲଣି ? ଗତକଲ୍ୟ ଭୈରବର ସ୍ତ୍ରୀକୁ କିଏ ହତ୍ୟା କଲା ।

ହରିଗୋପାଳ ସେଠ—( ସଭୟେ ) ଓହୋ ! ଫେର୍ ଭି କ୍ୟା ହୋଣେ ଲଗୁଛି, ଖବର ନାହିଁ ଶୁଣେ । ଏଇ ଘଟଣା ଦନକା ପହିଲେ ହାମ୍ରି ବୁଢ଼ା ଲଛମିନାରାଣ୍ ସେଠ୍‌କୋ କୋଣ୍ ବଦମାସ୍ ମାର୍ ଡାଲିଛି । ଗୋଟେ ଗାଛ ଡାଲ୍‌ମେ ଝୁଲେଣେ ବାନ୍ଧି ଡାଲିଛି । ତବ୍ ତୋ ଭୟା ଏଲେଡ଼କା ବାରୁ କୁଟୁମ୍ ଲେଣେ ଇହାଁ ଦେଶମେଁ

କୈଶା ଠହରଣେ ହୋଗା, ବୋଲନା ଭୟା କ୍ୟା କରଣା ହୈ । ଏ ସବ୍ ଖୁଣ୍ ମାମଲା ଦେଖ୍‌ଣେ ବଦନ୍ କାପ୍‌ନେ ଲଗୁଛି । ଇହାଁ ଜଣମ୍ ଲେଇ ଜମିଣ୍ ବାଡ଼ୀ ଦୋକାନ୍ କର୍‌ଚୁକେହେଁ । ଜଣମ୍ ଭୂମିକା ମାୟା ମାତାରକା ସ୍ନେହ ଚୋଡ୍‌କେ କାହାଁ ଚଲେ ଯିବା ଓ ବଡ଼ ମୁସ୍‌କିଲ୍ ହୋଣେ ଲଗୁଛି ।

ରାମଧନପାଣ୍ଡେ—କଣ ? ମୁଁ ମୋର ବାହୁ ଥିବା ପର୍ଯ୍ୟନ୍ତ, ହୃଦୟରେ ସାହସ ଓ ବଳଥିବା ପର୍ଯ୍ୟନ୍ତ, ସେହିପରି ଅନ୍ୟାୟ ଦେଖିଲେ କାପୁରୁଷ ପରି ତୁନିହୋଇ ରହିବ ?

ଜ୍ୟୋତିଃଶିଂହ—ପ୍ରାଣ ଥିବାଯାଏ ଯଦି ତରବାରି ହସ୍ତରେ ଥାଏ, ପାଷଣ୍ଡ ଓ ଗୁଣ୍ଡା ବଦମାସମାନେ ଯଦି ସମ୍ମୁଖୀନ ହୁଅନ୍ତି ତାହାହେଲେ ନିଃଶେଷ କରିବା ନିମନ୍ତେ କଦାପି ପଶ୍ଚାତ୍‌ପଦ ହେବ ନାହିଁ । ଏଥିନିମନ୍ତେ ଜନ୍ମଭୂମି ଛାଡ଼ି ଅନ୍ୟତ୍ର ଆଶ୍ରୟ ନେବାକୁ ହେବ ? ଏହା କଦାପି ଏ ମାତୃଭକ୍ତ ସନ୍ତାନ ମନକୁ ଆଣିବ ନାହିଁ । "ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ" । ମାତାକୁ ଛାଡ଼ି ସନ୍ତାନ କେବେ ରହିପାରେ ? ସ୍ନେହମୟୀ ଜନନୀ କେବେ ପୁତ୍ରକୁ ଛାଡ଼ି ରହିପାରେ ? ଆମ୍ଭେ ବୀର ମାତାର ସନ୍ତାନ—ବାହୁବଳରେ ମାତୃ ନାମର ଯଶ ପତାକା ଉଡ଼ାଉଅଛୁଁ ଓ ଚିରଦିନ ଉଡ଼ାଇବୁଁ ।

ଦୀନଦୟାଲ—ଦେଖ, ଯାହାର ଅର୍ଥ ଅଛି ସେ ଅପର ପକ୍ଷର ଜମି ଛଡ଼ାଇ ନିଜ ଦଖଲରେ ନେଉଅଛି । ଭୂମି ଉପରେ— ଉତ୍ତରାଧିକାରୀସତ୍ତ୍ୱ କ୍ରମେ କାହାର ମଧ୍ୟ ସ୍ଥାୟୀ ହୋଇ ରହୁ ନାହିଁ । ଏପରି ଅତ୍ୟାଚାର ବା କେତେ ସହ୍ୟ କରିବା ?

ହରଗୋପାଳ ସେଠ—ଜୋର୍ ଯିସ୍‌କା ମୁଲକ୍ ଉସ୍‌କା କ୍ୟା ନେହି ମାଲୁମ୍ ?

ରାମଧନ ପାଣ୍ଡେ—ଆମ୍ଭେମାନେ ତ ପ୍ରଜା; ଗୋଟିଏ ସାଆନ୍ତ ଗଲେ ଅନ୍ୟ ସାଆନ୍ତଙ୍କ ପ୍ରଜା । କିନ୍ତୁ ଏ ହତ୍ୟାକାଣ୍ଡ କିଏ କରୁଛି ତାକୁ ପାଇଲେ କି ଛାଡ଼ି ଦିଅନ୍ତ ? ( ନିଶରେ ହାତ ପକାଇ ଓ ମୁଷ୍ଟି ଦେଖାଇ ) ଏହି ମୁଷ୍ଟ୍ୟାଘାତରେ ମୁହୂର୍ତ୍ତିକେ ତାର ପ୍ରାଣ ନିଃଶେଷ କରି ଦିଅନ୍ତ ।

ଜ୍ୟୋତିଃସିଂହ—ଯାହା କହୁଅଛ ତାହା ସତ୍ୟ । ଯେତେବେଳେ ସୈନିକ କାର୍ଯ୍ୟ କରୁଅଛୁଁ, ଯୁଦ୍ଧ କରୁଅଛୁଁ, ଜୟ ପରାଜୟର କଥା ମାତ୍ର । ଦେଖ ଆମ୍ଭ ରାଜ୍ୟର ରାଜା ବିଜୟ ସିଂହଙ୍କୁ ବିଜେତା ଦୁର୍ଜ୍ଜନ ସିଂହ ବର୍ଷାଧିକ କାଳ ହେବ ବାହୁବଳେ ପରାସ୍ତ କରିଥିବାରୁ ସେ ଏଣେତେଣେ ଭିଖାରି ପ୍ରାୟ ବୁଲୁଛନ୍ତି ।

ଗୋପାଳଚନ୍ଦ୍ର ଭୂମ୍ୟଧିକାରୀ—"ସ୍ୱଜାତି ପର ହିଂସ୍ରକ" । ବୀରକୁ ବୀର ଛାଡ଼େ କି ? ରାଜାକୁ ରାଜା, ରାଜପୁତକୁ ରାଜପୁତ୍, ସେନାକୁ ସେନା; ଏମାନେ ପର ପରହିଂସ୍ରକ ।

ହରଗୋପାଳ ସେଠ—ଶୁଣ୍ ଭାୟା ! ଏ ଆଦ୍‌ମିର କଥା ଛୋଡ଼୍, ଯାଣୁଆର୍ ଆପ୍‌ଣେ ଆପ୍‌ଣେ ସ୍ୱାର୍ଥକା ବାସ୍ତେ ହିଂସାକା ସ୍ୱଭାବ ଦେଖାଉଛି । ଯେଇସା ଘୋଡ଼ାକୁ ଘୋଡ଼ା, କୁତ୍ତାକୁ କୁତ୍ତା, ବିଲ୍ଲିକୁ ବିଲ୍ଲି ସବ୍‌ଣେ ନିଜ୍ ନିଜ୍ ସ୍ୱାର୍ଥ ନେଇ ଝଗଡ଼ା କର୍‌ଣେ ଲଗନ୍ତି ।

ରାମଧନ ପାଣ୍ଡେ—ପୂର୍ବାଚାର୍ଯ୍ୟମାନେ କଣ ମିଥ୍ୟା ଉଲ୍ଲେଖ କରିଯାଇ ଅଛନ୍ତି ? "ଗଣିକା ଗୁଣିକା ବିପ୍ରାଃ, ବୈଦ୍ୟ ବେତାଳକକ୍କୁରା, ଦୃଷ୍ଟି

ମାନେ ପ୍ରକୋପନ୍ତି ସ୍ୱଭାବ ପରିହିଂସ୍ରକାଃ ।" ସେ ଯାହା ହେଉ,
ଭାଇ ବାଜୟ ସିଂହ ଯେପରି ଅଦର୍ଶ ନରପତି କ୍ରୂର ଦୁର୍ଜ୍ଜନ ସିଂହ—

ପାନଦୟାଲ—( କଥାରେ ବାଧାଦେଇ ) ଲୁନ ହୁଅ ! ଉପସ୍ଥିତ ସ୍ଥଳେ
କଏ ଯଦ ଶୁଣନ୍ତି ? ଚୁପ୍ ଚୁପ୍ ଦେଖ କେଉଁମାନେ ଆସୁ ଅଛନ୍ତି ।
( ସମସ୍ତେ ଉଠି ପାର୍ଶ୍ୱସ୍ଥ ଜଙ୍ଗଲରେ ଲୁକ୍କାୟିତଭାବେ ରହିବା ।
ଅନ୍ୟଦଗୁଁ କେତେକ ପ୍ରଜାଙ୍କ କଥୋପକଥନ ହେଉ ହେଉ
ପ୍ରବେଶ ) ।

ବକସରାମ ଦାସ—ଦେଖ ଭାଇ ! ଦୁର୍ଜ୍ଜନସିଂହ ଯେଉଁମାନଙ୍କ ଉପରେ
ପ୍ରଜାମାନଙ୍କ ଭାର ଅର୍ପଣ କରିଅଛନ୍ତି, ସେମାନଙ୍କ ନାମରେ ଯଦ
କୌଣସି ବଷୟରେ ନାଲଶ କରିବାକୁ ଯିବ, ତାହାହେଲେ
ଦୁର୍ଜ୍ଜନସିଂହ ଉକ୍ତ ଅଭିଯୋଗକାରୀମାନଙ୍କୁ ଅଧିକ ଲାଞ୍ଛନା ଦଅନ୍ତି ।
କେତେକ ହତ୍ୟାକାଣ୍ଡ ଅପରାଧରେ ସଂପୃକ୍ତଥିବାର ସନ୍ଦେହ କରି
କେତେ ନର୍ଦ୍ଦୋଷ ପ୍ରଜାଙ୍କୁ କାରାଗାରରେ ଅବଦ୍ଧ କରିଅଛନ୍ତି ।

ପ୍ରଭୁ ଦୟାଳଦୋସ୍ତ—ଏକେ ରାଜ୍ୟରେ ଅଶାନ୍ତି; ଅନ୍ୟପକ୍ଷରେ ଅନାବୃଷ୍ଟି ।
ତେବେ ମଧ୍ୟ ପ୍ରଜାମାନଙ୍କ ଦୁଃଖ ପ୍ରତି ଭ୍ରୂକ୍ଷେପ ନ କରି ରାଜଭଣ୍ଡାର
ପରିପୂର୍ଣ୍ଣ କରିବାକୁ ଓ ନଜର ଆମୋଦ ପ୍ରମୋଦ ବଢ଼ାଇବାକୁ
ସର୍ବଦା ବ୍ୟସ୍ତ ।

(ପୂର୍ବ ଲୁକ୍କାୟିତ ପାଞ୍ଚଜଣ ନାଗରିକଙ୍କର ପ୍ରବେଶ ଓ କଥୋପକଥନ
ହେଉଥିବା ନାଗରିକଙ୍କ ସହ କଥୋପକଥନ ) ।

ଗୋପାଳଚନ୍ଦ୍ର ଭୂମ୍ୟଧିକାରୀ—ସତ୍ୟ କହୁଛ ଭାଇ ! ଆମ୍ଭେମାନେ ମଧ୍ୟ
ଆପଣମାନଙ୍କ ସାଙ୍ଗ ଭାଇ । ଯେତେବେଳେ ଦୁର୍ଭିକ୍ଷ ହେଲା, ପୁଣି

ତାପରେ ଧନୀ ଲୋକଙ୍କର ଘର ଲୁଣ୍ଠିତ ହେଲା, ଦୁର୍ଭିକ୍ଷ ହେତୁ ଅନାହାରରେ ରହୁଥିବାରୁ ପ୍ରତିକାରି ନିମନ୍ତେ କେତେକ ପ୍ରଜା ଦୁର୍ଦ୍ଦନ୍ତ ସିଂହଙ୍କ ଠାକୁ ଜଣାଇ ଯାଇଥିଲେ । ସେତେବେଳେ ଦୁର୍ଦ୍ଦାନ୍ତ ତାର ଭୃତ୍ୟମାନଙ୍କୁ ଆଦେଶ ଦେଲା—'ତୁମ୍ଭମାନଙ୍କର ଉଚ୍ଛିଷ୍ଟ ଅନ୍ନ ଏହି କ୍ଷୁଧିତ କୁକ୍କୁରମାନଙ୍କୁ ଖାଇବାକୁ ଦିଅ ।' ଏହାଶୁଣି ପ୍ରଜାମାନେ ନିରାଶ ହୋଇ ଫେରି ଆସିଲେ ।

ଜ୍ୟୋତିଃ ସିଂହ—ଦେଖ ଭାଇ ! ଏ ସମସ୍ତ ଅତ୍ୟାଚାର ନୀରବରେ ସହ୍ୟ କରିବା କେତେ କାପୁରୁଷର କାର୍ଯ୍ୟ । ହେ ସ୍ନେହର ଭାଇଗଣ ! ଯେତେ ଶୀଘ୍ର ହୋଇପାରେ ଏକତା ଅବଲମ୍ବନ କରି ଅହଂକାରୀର ଅତ୍ୟାଚାର ଦମନ ନ କଲେ ଗତି ନାହିଁ ।

ସମସ୍ତେ ଏକ ସ୍ୱରରେ—ନିଶ୍ଚୟ ଆମ୍ଭେମାନେ ପ୍ରସ୍ତୁତ ଅଛୁଁ । ଆମ୍ଭେମାନେ ପ୍ରାଣ ଉତ୍ସର୍ଗ କରିପାରୁଁ ।

( ସମସ୍ତଙ୍କ ପ୍ରସ୍ଥାନ )

( ବିଦୂଷକ ଗୋଟାଏ ବୁକୁଲା କାଖରେ ପକାଇ ଛତା ଟାଣି ବାଡ଼ିଟିଏ ଧରି ଦ୍ରୁତବେଗରେ ପ୍ରବେଶ ଓ ପଶ୍ଚାତକୁ ଭୟ ଚକିତଭାବେ ଅନାଇବା । )

ବିଦୂଷକ—ଭାଗ୍ୟେ ମା ମୋର ଷଷ୍ଠୀବ୍ରତ କରିଥିଲା ବୋଲି ସିନା ଏ ଯାତ୍ରାକୁ ବଞ୍ଚିଲି । ଲୋଭରେ ପଡ଼ି କି ସର୍ବନାଶଟାଏ କରିଥିଲି ! ରାଜାଙ୍କ ଗହଣରେ ଯାଉଥିଲେ ଏତେ ଦଶା, ଏତେ ଦହଗଞ୍ଜ ହୋଇ ନଥାନ୍ତା । ଏ ପେଟଟି ମୋର କାଳ ହେଲା । ଏ ପେଟ

ପୂରବ ବୋଲି ସିନା ଏ ରାଜ୍ୟରେ ଥିଲି । ମୁଁ ଭାବିଥିଲି, ନୂଆ ରଜା ହେଲେ—କେତେ ମେଳା, ମଜ୍ଜଲିସ, ଦେବତା, ବ୍ରାହ୍ମଣ ଦାନ ଦକ୍ଷିଣା କରିବ; ଭୋଜି, ପିଠା, ମିଠେଇରେ ଭାସିଯିବ; ଦେଖିଲି ଭୁଛୁଆଟା । ଯଛକୁ କାଲଠା ହୋଇ ପେଟ ବାଜିଲରେ ମାଗିଲି । ସେ ଯେଉଁ ଉତ୍ତମ ମଧ୍ୟମ ଦେବାକୁ ସୈନିକଙ୍କୁ କହିଲେ । ମୁଁ ଭାବିଥିଲି ଭଲ, ମଧ୍ୟ ଭଲଆ ଖାଦ୍ୟରୁ ଦ'ଟା ମିଳିବ ପରା ? ବୋପା ଲୋ । ହୁକୁମ୍ର ପରି ସେ ଭୁଷଣ୍ଡା କାଳିଆ ସିପାହୀଟା ଦୁଲ୍ ଦାଲ୍ ଗୁଡୁମ୍ ଗୁଡୁମ୍ ଚଡ଼କ ପଡ଼ିଲା ପରି ଗୁପଡ଼ା, ବିଧା, ଗୋଇଠା ମାରି ଗାଁ ବାହାରେ ଚୁଟିଟା ଧରି ଏକାଥରେ—'ତୋ ଗୋସେଇଁ କଣ୍ଟକ ଯା' ବୋଲି ଧୋଷାଡ଼ି ଛାଡ଼ିଦେଲେ । ଓହୋ ! ଅଲୁସିଆଟା କ ନ କଲା ! ଅଣ୍ଟା, ପିଠି, ଗୋଡ଼ ଯୁ ଦରଜ । ମଲି ଲୋ ମା ! ଆଉ ଚାଲି ପାରିବ ନାହିଁ । (ଥକାଇ ବସି ପଡ଼ିବା) ଛାରି ସେନାପତି ହୋଇ ରଜାଟାଏ ହେଲୁ, ତୁ କୋଉଁଠୁ ଲୋକ ଚିହ୍ନିବୁ ? ତୋ ଆଖିକ ଏଥର ସଂସାର ଲୋକେ "କାଠଷ୍ଟ କାଠା-ମୃତେ" ଦଶିବେ । ରଜା ପୁଅ ରଜା, ତୋ ମୁଣ୍ଡଟା ଏଣିକି ସ୍ୱର୍ଗକୁ ଦ' ଆଙ୍ଗୁଳ ଛାଡ଼ିବ । ହଁ, ରଜା ହେଲୁ, ରଜାପୁଅ ପରି କାମ କର । ଛୋଟ ଲୋକର ପୁଅ ତ-ତାର ଆଉ କେତେ ବୁଦ୍ଧି ସୁଧୀ ଥିବ । କଣ୍ଟିଆଲ ବେହିପୁଅଟାଏ ଅଛି ଯେ ରାଜ୍ୟରେ ରାତିଦିନ କା'ର କ'ଣ ହେଲା, କିଏ କାହାର କାଣିଲା, ସୋରିଷ ଫୁଟିଲାଠୁଁ ସବୁ କଥା ନେଇ ଗପ୍ କରି ରଜା କାନରେ କହି ଦେଉଛି । ତୁ କଣ୍ଟିଆଲ, ତୁ ଗୁଡ଼ର ଧରି, ଲୋକର ପ୍ରପଞ୍ଚରେ ତୋର କଣ ଅଛି ? ତୁ ହେଲୁ ରଜାଟିଏ, ଏଇ ଛୋଟ ଲୋକ ଗୁଡ଼ାକଙ୍କ ବୁଦ୍ଧିରେ ପଡ଼ି

କାହିଁକି ଏତେ ତାଣ୍ଡବ ଲଗେଇଛୁ ଭଲା ? ତୁ ତୋ ଆଖିରେ ଦେଖ୍, ପାଞ୍ଚ ଭଲଲୋକଙ୍କ ଠାରୁ ବୁଝ୍, ତା ଉତ୍ତରୁ ତୋ ବୁଦ୍ଧିକି ଯିମିତି ଦଶିବ ସେମିତି ଦଣ୍ଡ ଦେ । ଆରେ ବାବୁ ! ହଁ ନାହିଁ ଟୁଁ ନାହିଁ, ବାର ପ୍ରପଞ୍ଚ ଘଡ ମିଛ ଏ ଖଚୁଆ ଗୁଡ଼ାକ ଯାହା କହିବେ ସେଇଥିରେ ପଡ଼ିବୁ ! ଦିନ କେତେଟାରେ ରାଜ୍ୟଟାକୁ ଜାଳି ପୋଡ଼ି ଦେଲଣି । ମୋ ଦଶାଟା ଉଛି, ବୃହସ୍ପତି ପଞ୍ଚମରେ ଥିବାରୁ ସିନା ବ୍ରାହ୍ମଣୀଟାକୁ ତା ବାପଘର ରାଇଜକୁ ନିକାଲି କରି ଦେଇଥିଲି ବୋଲି ? ନୋହିଲେ ଏତେ ବେଳକୁ ସେଇଟା ଥିଲେ ମୋ ଦଶା ବାର ଘଣ୍ଟା ଷୋଳ ଗଣ୍ଡାରେ ଯାଇ ପହଞ୍ଚି ଥାନ୍ତା । ମୋ ତାଳ ଯାଇ ବ୍ରାହ୍ମଣୀ ମୁଣ୍ଡରେ ଛଡ଼ନ୍ତା । ହେଉ ଯେ ଦେଖିବ ଦେଖିବ, ଏଇ ଆଖିରେ ଦେଖିବ । ପାଖୁଆ ଗୁଡ଼ାକଙ୍କ ନିମନ୍ତେ ରଜାଟାର ସର୍ବନାଶ ଘଟିବ । ଏମାନଙ୍କର କୁମନ୍ତ୍ରଣାରେ ଏଇଟା ଆଉ ଅଢ଼େଇ ଦିନରେ ରାଜ୍ୟଚ୍ୟୁତ ହେବ । ଏ ରଜାର ପାଖରେ ଦୋଷିକି ଠେଙ୍ଗେ, ଆଉ ନିର୍ଦ୍ଦୋଷିକି ମଧ୍ୟ ଠେଙ୍ଗେ ! ଗାଁ ପୋଡ଼ିଲେ ଦେବାଳୟଟି କି ନିସ୍ତରି ପାଏ ବାବା ? ଏ ରାଜ୍ୟରେ ରହିବା ଉଚିତ ନୁହେ । ବୁଢ଼ା ରଜା ଯେଉଁଠି ଅଛନ୍ତି ସେଇଠି କିମିତି ପହଞ୍ଚିଲେ ରକ୍ଷା । କିନ୍ତୁ ସେଠି ଖାଇବି କଣ ? ସେଠାରେ ଆଉ କ'ଣ ମିଳୁ-ଥିବ କି ? ହରଡ଼ା, ବାହାଡ଼ା, ଯେତେକ କଷା ପିତା ଫଳମୂଳ । କଣ କରିବ ? ତା' ପଛେ ଖାଇ ଅରୁଚି ଧରୁ, ବଞ୍ଚିଥିଲେ ଖାଇବାକୁ ମିଳିବ ଯେ । ଓହୋ ! ଅଣ୍ଟା, ପିଠି କାଟୁଛି ( କଷ୍ଟେ ସଷ୍ଟେ ଉଠିବା ଓ ଚତୁର୍ଦ୍ଦିଗ ନିରୀକ୍ଷଣ କରି ଚମକି ) ମଲି ଲୋ ବାପା ! ହେ ମା ସଙ୍କଟତାରିଣି ! ଏ ବାରକ ରକ୍ଷାକର ! ହେଇ ତ କିଏ ଆସୁଛି !

ଏଇ ତ ସେ ସିପାହୀ ପରି ଦିଶୁଛି । ଆଜି ରକ୍ଷାନାହିଁ । ପୁଣି ବାଡ଼େଇ ପକାଇବ । ( କହି ଇତସ୍ତତଃଭାବେ ଲୁଚିବା ) ।

( ଜନୈକ ଛଦ୍ମବେଶୀ ସୈନିକର ପ୍ରବେଶ )

ଛଦ୍ମବେଶୀ ସୈନିକ—ଏ କିଏ ? ଓଃ । ଏତ ଅମ୍ଭ ବୟସ୍ୟଙ୍କ ପରି ଦେଖା ଯାଉଛି । (ସନ୍ନିକଟସ୍ଥ ହୋଇ ) କିଏ ତୁମ୍ଭେ ?

ବିଦୂଷକ— (ଭୟ ବିହ୍ୱଳିତ ଭାବେ) (ସ୍ୱଗତ) ଏ ମହାବଳ ହାତୁଡ଼ରେ ବାପା । (ପ୍ରକାଶ୍ୟେ) ନା-ନା-ମୁଁ-ବା-ଠୋ-ଇ—ବା-ଠୋ-ଇ ବାବୁ ।

ଛ: ସୈ:—ପାଖକୁ ଆସ ।

ବିଦୂଷକ—(ଥରି ଥରି) ବାପା ରକ୍ଷାକର—ମୁଁ ଗରିବ ବ୍ରାହ୍ମଣ – ତୁମ ହାତ ଧରୁଛି—ମୋତେ କ୍ଷମାକର—ମୁଁ ବ୍ରାହ୍ମଣୀକୁ ଆଣି ଯାଉଛି । ସେ-ମୋ-ର-ପ୍ରା-ଣ—

ଛ: ସୈ:—(ଛଦ୍ମବେଶ ଉନ୍ମୋଚନ କରି) ଚିହ୍ନିଲ କି ?

ବିଦୂଷକ—( ନିରୀକ୍ଷଣ କରି ) କିଏ ? ରଣଜିତ୍ ସିଂହ ? ମୁଁ ତୁମ୍ଭଙ୍କୁ ଦେଖି ପୁନର୍ଜନ୍ମ ଲାଭ୍ କଲି । ମୋତେ ବଞ୍ଚାଅ, ମହାରାଜାଙ୍କ ଛାମୁକୁ ନେଇଚାଲ ।

ରଣଜିତ୍ ସିଂହ—ଭୟ ନାହିଁ, ମୋ ପଛେ ଆସନ୍ତୁ—ଆପଣ ରହିଯିବାରୁ ମହାରାଜ ଭାରି ଚିନ୍ତିତ ଥିଲେ । ଆସନ୍ତୁ । (ବିଦୂଷକ ଓ ରଣଜିତ୍ ସିଂହଙ୍କ ପ୍ରସ୍ଥାନ । )

[ ଗୃହିଣୀ ଗଣଙ୍କ ପ୍ରବେଶ ଓ ଗୀତ-ଗାନ ]

ସ୍ୱର୍ଗ ସମ ଯଶୋଲକ୍ଷ୍ମୀର ଶୋକଧାରେ ଭାସେ,
ବୀର-ସ୍ଥାନ ମାତୃଭୂମି ଶ୍ମଶାନ ସମ ଦଶେ;
କାହିଁ ସେ ଜ୍ୟୋତିଃ ? କାହିଁ ସେ ଥାଟ ?
କାହିଁ ସେ ରାଜା—ବିଜୟ ପାଟ ?
ପ୍ରାତଃ ସ୍ମରଣୀୟ—ମହାପ୍ରାଣ
ଜନମ ଚନ୍ଦ୍ର ବଂଶେ ।
ଦଶ ଦିଗ କରୁଣ ସ୍ୱରେ ଶୋକ ନିନାଦ,
ପୁରବାସୀ ପ୍ରଜା ନରନାରୀ ହୃଦୟେ ବିଷାଦ ।
ଏକସ୍ୱରେ ଡାକନ୍ତି କାତରେ
ଏକଲିଙ୍ଗ ମହେଶ୍ୱରେ,
(ଯାଉ) କ୍ଳେଶ ଫେରିଆ ଯଶ
ବିଜୟ ନୃପେ ଦେଶେ ।

( ପ୍ରସ୍ଥାନ )

## ପଟ୍ଟ ପରିବର୍ତ୍ତନ



## ଦ୍ୱିତୀୟ ଦୃଶ୍ୟ

ଅନ୍ତଃପୁର କକ୍ଷ

( ଜ୍ୟୋସ୍ନାବାଈ ନନ୍ତତ ଚଢ଼େ ଗୀତ ଗାଇ ଗାଇ ପ୍ରବେଶ )

ଜ୍ୟୋ ସ୍ନା—

—ଗୀତ—

ସୁନାରାଜ୍ୟ ଛରଖାର ହେଲା ହାୟ !
ଆଉ ସେ ଶିଶ୍ରୀ ଫେରିବ କି ?
ପିତା ମୋର ନିର୍ବାସିତ ହାୟ !
ଆଉ ସେ ମୁଖ ଦେଖିବ କି ?
ବୃଦ୍ଧ ପିତା ବନବାସୀ ହାୟ !
ପୋଡ଼ା ପ୍ରାଣ ମୋ ନ ଯିବ କି ?
ଦୁର୍ଜ୍ଜନର ପାପାଶ୍ରୟେ ହାୟ !
ଶରଦନ—ବନ୍ଦୀ, ରହିବ କି ?
କାହିଁ ସେହି ଆର୍ତ୍ତବନ୍ଧୁ ହାୟ !
ମୋ-ଦୁଃଖ ନେତ୍ରେ ନ ଦେଖନ୍ତି କି ?
ଡାକି ଡାକି ଅସ୍ଥିର ମୁଁ ହାୟ !
ମୋ ଦୁଃଖ କେବେ ନ ଫେଡ଼ିବେ କି ?
ପ୍ରଜାଙ୍କର ହାହାକାର ହାୟ !
ଅନାଥ ବନ୍ଧୁ ନ ଶୁଣିବେ କି ?

( ସ୍ୱଗତ ) ହାୟ ! ହାୟ !
ମୋ ସମ ଦୁଃଖିନୀ

ନଥିବେ ଏ ଭବେ କେହ୍ର ।
ମୋର ଏହ୍ର ଦେହେ –
ଗଲାଣି ଯେ କେତେ ଦୁଃଖସୁଖ
ଭୋଗ ହୋଇ,
ନାହିଁ ତା କଳନା—ଅଉ,
କେତେ ଯେ ଯାତନା—
ସହିବ ଏ ଶୋଣିତ-ମାଂସର ଦେହ,
କର ଅଣ୍ଟ ପାଷାଣ ହୃଦୟ ।

ଦେଖି ଚକ୍ଷୁଅଗ୍ରେ
ପିତାଙ୍କ ସନ୍ତାପ,
ସନ୍ତାପିତ ହୁଏ ପ୍ରାଣ ମୋର ।
ହାୟ ! ପିତା ମୋର
କରୁଥିଲେ ପୁତ୍ର ସମ
ପରଜା ପାଳନ—ରଖି ସଦା ନ୍ୟାୟଧର୍ମେ ମତ ।
ଏବେ ଦେଖି ନାହିଁ କଠୋର
ପ୍ରକୃତ ତାଙ୍କ ।
କାହିଁ ହେଲା ପରାଜୟ,
କହନ୍ତି ଯେ ବୃଦ୍ଧଜନେ ଧର୍ମରେ ବିଜୟ,
ନୋହେ କେବେ ଧର୍ମେ ପରାଜୟ,
ଅଛି ଭରସା ତେଣୁ ହୃଦେ ଜାଗରତ ।

ଅଭାଗିନୀ ପ୍ରତି ମାୟା ଏଡ଼ିଦେଇ
ଗଲେ ଛାଡ଼ି ମାତୃଦେବୀ

ଶୈଶବ ସମୟୁ ।
ପିତୃ ସ୍ନେହେ—
ପିତାଙ୍କ ଆଦରେ, ବଢ଼ୁଥିଲି ସଯତନେ,
ମାଇ ସ୍ନେହାହ୍ଲାଦ ।
ହାୟ ! ଅଭାଗିନୀ ରୂପଦୋଷେ
ହେଲେ ଭାଗୀ ଜନକ ମୋହର ।
ରୂପଲୋଭେ କଲା ଦୁଷ୍ଟ-
ଚକ୍ରାନ୍ତରେ-ପିତାଙ୍କୁ ରାଜ୍ୟରୁ ଦୂର,
ଏ ହୃଦୟ-କେତେ ବା ସହିବ
ନିୟତିର କର୍ମ୍ମ ତାଡନା ?
ବର୍ଷ ହୁଏ ବଦଳିତ ପ୍ରାୟ ।
ନିଜର ଅଧୀନ ଦୁର୍ଗେ—
କରି ଅବରୋଧ
ବନ୍ଦୀ ସମ ରଖିଅଛି
ସେ ମୂଢ଼ାତ୍ମା !
ହରିବାକୁ ମନମୋର
ଦେଖାଉଛି ପାପୀ ପ୍ରଲୋଭନ ।
ଛି ! ଛି !
ପିତାଶତ୍ରୁ ଦେଶବୈରୀ !
ବଂଶର ମର୍ଯ୍ୟାଦା ଉପହାର ରୂପେ
ହୋଇ ବୀରପୁତ୍ରୀ
ଶତ୍ରୁକରେ ସମର୍ପିବି,

କରିବ ମୁଁ ଶତ୍ରୁ ପଦ ସେବା ?
ନା—ନା—
( ନର୍ମଦାର ପ୍ରବେଶ )

ନର୍ମଦା—( ଜ୍ୟୋତ୍ସ୍ନାପ୍ରତି ) ସଦା କପାଁ
କର ଗୋ ଭାବନା ?
ଅଛନ୍ତି ଯେ ହର—ଏକଲିଙ୍ଗ !
କରିବେ ଉଦ୍ଧାର ଦେବ
ଏ ଦୁଃଖ ସାଗରୁ କର୍ଣ୍ଣଧାରରୂପେ ।

ଜ୍ୟୋତ୍ସ୍ନା—ନର୍ମଦେ ଗୋ !
ମନ ହେଉଛି ଦୁଃଖିତ,
ଥିଲେ ପିତା ସିଂହାସନେ
ଥିଲା ଯଶୋଲକ୍ଷ୍ମୀର ଦୁର୍ଗ
ହାୟ ! ଆଜି ସବୁ ଅସ୍ତମିତ ।

ନର୍ମଦା—ଦେବୀ !
ନକର ଗୋ ଚିନ୍ତା
ମୋ ମାନସେ କରିଅଛି
ଏକଇ ବିଗ୍ରହ;
କରଣ ଶ୍ରବଣ,
କର ଯଦି ତାହା—
ସମ୍ରାଟନେ ଅନୁମତି ଦାନ,
ହେବ କଷ୍ଟେ ଶ୍ରେୟ ।
ଦୁର୍ଜନର ଦ୍ୱାରରକ୍ଷୀ

ଅଚିନ୍ତ୍ୟ ମାତୁଳ ମମ—
ଗୃହିଁ ଯଦ ଏ ଦୁର୍ଗରୁ
ହୋଇ ମୁକ୍ତ ପିବାକୁ ପିତାଙ୍କ ପାଣ,
ତେବେ କଲେ ଅନୁରୋଧ
ନ ଜାଣିବେ କେହି
ଦେବେ ସେ ଗୁପତେ
ଦ୍ୱାର ଉନ୍ମୋଚନ କରି ।
ବସି ଅଶ୍ୱ ପୃଷ୍ଠେ
କରିବ ଗମନ ସ୍ୱଚ୍ଛନ୍ଦେ,
ତବ ପଛେ କରିବୁଁ ଗମନ ସର୍ବେ ।
ଦୁରାତ୍ମାର ପୈଶାଚିକ ଆଶା
ହେବ ମରୀଚିକା ସମ ।

ଜ୍ୟୋତ୍ସ୍ନା—ଛିଃ !
ଗଲ ଭୁଲି
ସଙ୍ଗୀନ ମୋହରେ
ଗଲ ଭୁଲି ପୂର୍ବ କଥାମାନ ?
ଥିଲ ଦିନ, ଭାରତ ଭୂମିରେ—
କରି ଯୁଦ୍ଧ, ରମଣୀୟ ରମଣୀ ହୃଦ
କରୁଥିଲ ଦର୍ପୀ, ଦୃଢ ହୃଦୟ କମ୍ପନ ।
ଆଜି ସେହି ଶକ୍ତି
ହେବ କି ବିଲୁପ୍ତ ?
କରି ଅସି ସଂଗୃହନ
ସଂଯୁକ୍ତା, ପଦ୍ମିନୀ –

ସୁଭଦ୍ରାକୁମାରୀ—ଦୁର୍ଗାବତୀ ଆଦି
ପିତୃକୁଳେ-ଅବା ସ୍ୱାମୀ କୁଳେ
ହୋଇଥିଲେ ବରଣୀୟା
ପୂଜ୍ୟ ଭୂମି ଭାରତ ବକ୍ଷରେ ।
ଉପସ୍ଥିତ ହେଲେ ସେ ସମୟ
ବୀର ବାଳା ନ ଡରିବ
ବୀରୋଚିତ କର୍ତ୍ତବ୍ୟ ସାଧନେ ।

( ଲଳିତାର ପ୍ରବେଶ )

ଲଳିତା— ଈଷଦ୍ ହାସ୍ୟେ ) କିବା ପରାମର୍ଶ କର
ବସିଣ ଏକାନ୍ତେ—
ନର୍ମଦା ସହିତ ?
ଶୁଣିଛି ମୁଁ ଏକ ଅଜ
ଆନନ୍ଦ-ବାରତା ।

ଜ୍ୟୋତ୍ସ୍ନା—( ସଚକିତେ ) କି ଆନନ୍ଦ ସମାଚାର ?
ଫେଡ ଗୋ ସନ୍ଦେହ,
କର ବ୍ୟକ୍ତ ବିଳମ୍ବ ନକର ।

ଲଳିତା—ରାଜପୁତ୍ରି !
ଶୁଣିଛି ମୁଁ
ବଂଶର ଗୌରବ ପାଇଁ
ଜ୍ୟୋତିଃସିଂହ—ଦୁର୍ଗୋଦ୍ଧାର ଚେଷ୍ଟା ଅଗ୍ରେ
କରୁଛନ୍ତି ସଙ୍କଳିତ
ପ୍ରଜାସହ ଏକ ଷଡ଼ଯନ୍ତ୍ର ।

ଜ୍ୟୋତ୍ସ୍ନା—କ କହୁଛ ?
ଶୁଣି ହେଲି ଆଶ୍ଚର୍ଯ୍ୟ ଅନ୍ତରେ;
କଏ ! ଜ୍ୟୋତିଃସିଂହ ?
ଅହୋ, ଏହୁ ଦେଶବାସୀ ?
ଅହୋ—ହେବ କରେ—
ଏତେ ଭାଗ୍ୟ
ଦେଶୋଦ୍ଧାର ଯଶେ ବମଣ୍ଡିତ,
ଯଶୋଲ୍ମୀର ଜନନୀ କୁମାର
କରିବ ଯେ ଜନ୍ମଭୂମି—
ମାନ ଉଦ୍ଧାରଣ;
ଲଳିତେ ଗୋ !
କହ ସ୍ପଷ୍ଟ କାହାର ତନୟ ।

ଲଳିତା—ଜାଣ ନା କ ?
ଯଶୋଲ୍ମୀର ସିଂହାସନ,
ଯାର ବଳେଥିଲା ଦୃଢ଼ତର
ରାଜପୁତ କ୍ଷତ୍ରୀୟ କୁମାର
ସ୍ୱର୍ଗୀୟ ସେନାନାୟକ
ସୁକୁମର ମଣି,
ନାମ ଯାର ଜ୍ୟୋତିଃସିଂହ ।
ଅହୋ ! ପରଦୁଃଖେ—
ପ୍ରଜା ନିର୍ଯ୍ୟାତନ ଦୁଃଖେ,
ଜନ୍ମଭୂମି-ଜନନୀର ଦୁଃଖେ—

ଅତ୍ତ ଜଗ ମାତ୍ର ଦୁଃଖେ—
ସଦା ଯେ ଚକିତ ।
ତେବେ ମଧ୍ୟ ସୌମ୍ୟସ୍ଫୂର୍ତ୍ତି
ଭସ୍ମ ଆଚ୍ଛାଦତେ ଯେଉଁ—
ଥାଏ ହୁତାଶନ ।

ନର୍ମଦା—ତେବେ ଗୋ ଲଳନ୍ତେ !
କହ ତୁମ୍ଭେ ଯାଙ୍କ କଥା
ଦେଖିଛ ତାହାଙ୍କୁ,
ଦଶନ୍ତି ସେ ରୂପ ଗୁଣେ
ରାଜପୁତ୍ର ସମ ।
ସୌମ୍ୟ ଦଣେ ତାଙ୍କ କାନ୍ତି,
ହୃଦୟ ପ୍ରଶାନ୍ତ,
ଚରିତ ଉଦାର, ମିଷ୍ଟଭାଷୀ;
କେଉଁ ଦୋଷେ ନ ହେଲେ ସେ
ନରେନ୍ଦ୍ର କୁମାର ?

ଲଳିତା—ନା ସଖି !
କ୍ଷତ୍ରୀୟ କୁଳରେ ଅଛନ୍ତି ଜନମି
ସେହୁ ଜ୍ୟୋତଃଙ୍କ ପ୍ରତାପ ଅଛି ଭରି
ପ୍ରଲମ୍ବ ବାହୁରେ
ପ୍ରଶାନ୍ତ ନୟନ ଅହା !
ଦଣେ ନବ ଇନ୍ଦବର ଭଳି
ସୁବିସ୍ତୀର୍ଣ୍ଣ ବକ୍ଷ

ଯଶୋଲକ୍ଷ୍ମୀ-ଜନନୀ ଅଙ୍କେ
ନାହିଁ ସେପରି ସନ୍ତାନ ।

ଜ୍ୟୋତ୍ସ୍ନା—ହେଉ ଜୟ ମାତୃଭୂମି—
ସନ୍ତାନ ନବହେ
କରନ୍ତୁ ଉଦ୍ଧାର,
ହେଉ ଜନନୀର ମୁଖୋଜ୍ଜ୍ୱଳ ।
କର ତାଙ୍କ ଜୟ ଆଜେ
ଈଶ୍ୱରଙ୍କୁ ଧ୍ୟାନ ।
ଜନ୍ମଭୂମି ମାନ ରକ୍ଷା
କରିବେ ଯେ ମାତା
ଦେଇ ଅଙ୍ଗେ ବଳ,
ସେ ଦେବୀ ଚାମୁଣ୍ଡା, ଆଉ
ବୃଷଧ୍ୱଜ ଏକଲିଙ୍ଗ ହର ?

ସମସ୍ତେ—"ଜୟ ଜୟ ଯଶୋଲକ୍ଷ୍ମୀର ପ୍ରାସାଦମଣ୍ଡିନୀ ।"

ଜ୍ୟୋତ୍ସ୍ନା—ଚାଲ ଯିବା,
କରିବା ଗୋ ନିତ୍ୟକୃତ୍ୟ ସମାପନ,
ଉତ୍ପୂର ହେଉଛି ବେଳ ।

( ସମସ୍ତ ସଖୀସଙ୍ଘ ପ୍ରସ୍ଥାନ )

## ପଟ୍ ପରିବର୍ତ୍ତନ

# ତୃତୀୟ ଦୃଶ୍ୟ

ମନ୍ତ୍ରଣା କକ୍ଷ

ସମୟ—ରାତି

( ରାଜା ଦୁର୍ଜ୍ଜନ ସିଂହ, ମନ୍ତ୍ରୀ ଶରଣ ସିଂହ )

ଦୁର୍ଜ୍ଜନ ସିଂହ—ମନ୍ତ୍ରୀ !

ଦେଖି ତବ ଶାସନ କୌଶଳ
ଖେଳଗଲା ହୃଦୟରେ
ଆନନ୍ଦ ଉଲ୍ଲାସ ।
ନ ଥିଲା ମୋ ଆଶା
ପ୍ରଜାଙ୍କ ନିକଟୁ
ରାଜସ୍ୱ ଆଦାୟ;
ଏବେ ଯେ ସମୟ—
ରାଜ୍ୟେ ପ୍ରଜା
ହୋଇଛନ୍ତି ପିଷ୍ଟପେଷଣର ସମ ।
କିନ୍ତୁ !
ଏ ସମୟେ ଅନନ୍ତ ବଳମ୍ବେ
କାର୍ଯ୍ୟ ସମ୍ପନ୍ନ କରିବା
ଦକ୍ଷତା ବିଷୟ ।
ଆମ୍ଭର ନିକଟେ ଆସନ୍ତି ପ୍ରଜାଏ
ଜଣାଇବା ଅଶେ ନିଜ ଦୁଃଖ,—

କାନ୍ତୁ, ଥିବାରୁ ମୋ ମନଦୁଃଖ
ନ ଶୁଣେ ପ୍ରଜାଙ୍କ ସେହୁ ପ୍ରାର୍ଥିତ ସମ୍ବାଦ ।
ରାଗଦର୍ପେ ଦଏ ଘଉଡ଼ାଇ
ପ୍ରାର୍ଥନା ତାଙ୍କର ନ କରେ ଗ୍ରହଣ ।
ନ କରେ ଗ୍ରହଣ କିପାଁ—
ଜାଣ କି ?

ଶରଣ ସିଂହ—ମହାରାଜ !
ଜାଣେ ଏ ଅଧୀନ ତାହା,
ଜାଣି ଶୁଣି କରଅଛ ପୂର୍ବୁ—
ଯଥୋଚିତେ—
ସମସ୍ତ ନିର୍ବାହ ।
କିପାଁ ଖମୁ ବ୍ୟଥିତ ଅନ୍ତର ?
ଦେବ ନାହିଁ କେବେ
ପ୍ରଜାଙ୍କୁ ପ୍ରଶ୍ରୟ ।
କଲେ ଆଶ୍ୱାସନା
ପରେ ହୋଇ ନିର୍ଭୀକମାନସ,
ଏକାଠିତେ ଘଟାଇବେ—
ରାଜ୍ୟରେ ଅଶାନ୍ତ ।
ଅଗ୍ରେ ଦମନ ନୀତରେ
କରାଇଣ ଭୟ ପ୍ରଦର୍ଶନ,
ପରେ ରାଜ୍ୟେ ଦେଖିଣ ସ୍ଥାୟୀତ୍ୱ,
କରିବ ବସ୍ତଳ ହୃଦେ ମଧୁର ଶାସନ ।

କିପାଇଁ ଚିନ୍ତିତ ?
ଏ ଅଧୀନ କରିବ ଯେ ଶାୟୀମତେ—
ସମସ୍ତ ନିର୍ବାହ,
କିନ୍ତୁ ଦେବ !
ଦେଖି ଶ୍ରୀମୁଖ ମଳିନ ଆଜି—
ଲାଗେ ମନେ ମମ ଅସୀମ ଯନ୍ତ୍ରଣା ।
ଛାମୁଙ୍କର ମାନସିକ ଦୁଃଖ
ଦୂରୀଭୂତ ହେବ ଦେବ !
ଅଯାଚିତେ ରାଜକୋମା
ହୋଇବେ ଅର୍ପିତ ଶ୍ରୀଛାମୁ ପୟରେ ।
ନୃହନ୍ତୁ ବ୍ୟଥିତ,
ଆଦେଶିବା ହେଉ
ପୁନ ପୁଣି ବାରବଧୂଠାରୁ
ଶୁଣିଣ ସଙ୍ଗୀତ
ହେବ ଛାମୁ ହୃଦୁ ଅଶାନ୍ତ ଅନ୍ତର ।
ଆଦେଶିଲେ ଝଣାଇବ ।

ଦୁର୍ଜନ ସିଂହ—ଯାଅ—

ତବ ଇଚ୍ଛା କିଏଁ। କରିବା ଖଣ୍ଡନ ?

( ମନ୍ତ୍ରୀ ଦୂତକୁ ଡାକିବା ) ଦୂତ !

ନେପଥ୍ୟେ—ଆଜ୍ଞା ହେଉ ମଣିମା !

ଶରଣ ସିଂହ—ଯାଅ ଶୀଘ୍ର ଦୂତ !
ଅଣ ସୁନ୍ଦରୀ ନର୍ତ୍ତକୀ
କରବ ସମ୍ମୁରେ ଗାନ ।

ନେପଥ୍ୟେ—ଦୂତ—ଯେ ଅଜ୍ଞା !

( କିଛିକ୍ଷଣପରେ ନର୍ତ୍ତକୀ ଓ ବାଦକଦ୍ୱୟଙ୍କ ପ୍ରବେଶ )

ଶରଣ ସିଂହ— ( ନର୍ତ୍ତକୀ ପ୍ରତି )—
ଅଜି ସମ୍ମୁଙ୍କର ଶ୍ରୀମୁଖ ମଳିନ
ଅଜ୍ ମନ ଉତ୍କଣ୍ଠିତ,
ଏ ସମୟ ଲକ୍ଷ୍ୟକରି କର ନୃତ୍ୟଗାନ—
ମଧୁର ସଙ୍ଗୀତ ତାନ ଶୁଣାଅ ସମ୍ମୁଙ୍କୁ ।

ବେଶ୍ୟା—ଯେ ଅଦେଶ ।

(ଗଳା ମାର୍ଜନା ପୂର୍ବକ)

—ଗୀତ—

ଆସ ଲୋ ଦେଖିବ ପ୍ରୀତିଖେଳା
ପ୍ରେମ ପାରାବାରେ ଡୁବେ ପ୍ରେମି-ମନ-ଭେଳା । ପଦ ।

ପ୍ରେମଗୀରେ ବୁଡିଲେ ସଖୀ କଥିଅଣେ
କା "ଭାଗ୍ୟେ ରତ୍ନ ମିଳେ", କେ ହତାଶେ
କଳଙ୍କ ପଙ୍କେ ଶିହରେ
ପ୍ରେମ ସରମ ଭରେ;

ପୀରଛ ପଥ ଖସଡ଼ା,
ଖସିଲେ ନ ମିଳେ ସାଡ଼ା—ଦୁଏ ଯଦ ହେଲ୍ଲ ।

ଦୁର୍ଜ୍ଜନ ସିଂହ—ଉତ୍ତମ ସଙ୍ଗୀତ ।
ଆମ୍ଭ ଶତ୍ରୁ ବନୋଦନେ
ଏହୁ ଗାନ ହେଲ୍ଲ ସମୀଚନ ।
ଯାଅ ମନ୍ତ୍ରୀ ।
ଯଥୋଚତ ପୁରସ୍କାର ଦେଇ
କର ତୁଷ୍ଟ ନର୍ତ୍ତିକାମାନସ ।

ଶରଣ ସିଂହ—ଯଥାଦେଶ ମହାରାଜ !

( କହୁ ଉତ୍ଥାନ ଓ ନର୍ତ୍ତିକାଙ୍କୁ ବଦାୟ ଦେଇ ପୁନଃ ପ୍ରବେଶ. )

ଦୁର୍ଜ୍ଜନ ସିଂହ—ମନ୍ତ୍ରୀ ।
ଯାଅ ତବ ବଶ୍ରାମ ସ୍ଥଳକୁ ।
ଅତୀତ ଯାମିନୀ ହେବ
ଅଳପ ସମୟେ;
ଆଳସ୍ୟ କରବା ଦୂର
କାଛକ୍ଷଣ କରଣ ବଶ୍ରାମ ।

ଶରଣ ସିଂହ—ଯଥା ଆଜ୍ଞା ।

( କହୁ ଅଭବାଦନପୂର୍ବକ କଛ ଦୂର ପ୍ରସ୍ଥାନୋଦ୍ୟତ ପର ପୁନଃ ଲେଉଟି ଆସିବା । )

ଦୁର୍ଜ୍ଜନ ସିଂହ—କ ବାରତା ମନ୍ତ୍ରୀ ?

ଶରଣ ସିଂହ—ମହାରାଜ !

ଅଛି ଏକ ଗୁପ୍ତ ନିବେଦନ,
କହୁଛି ମୋ ଗୁପ୍ତଚର
ତେଣୁ ଲେଉଟିଲି ଦେବ !
ଜାଗା ନଦୀ—ଅରଣ୍ୟ ନିଭୃତ ତଟେ
ବସି କେତେ ନାଗରିକ
କରିଛନ୍ତି ଷଡ଼ଯନ୍ତ୍ର ।
ସେ ମଧ୍ୟରେ ଏକ—
ବଣିଷ୍ଠ ନାୟକ ରୂପେ,
ଉତ୍ସାହିତ ବାକ୍ୟଦାନେ
କରୁଥିଲା ପ୍ରଜାଗଣ
ମନ ଉତ୍ତେଜିତ ।
ସାର ମର୍ମ ଏହି—
ହେଲେ ଯେ ସମୟ
ଧରିବେ ସକଳେ ଅସ୍ତ୍ର
ଆମ୍ଭଙ୍କ ଅହିତେ ।
ଏବେ ସେହି ରାଜଦ୍ରୋହୀଗଣେ
କରିବାକୁ ହେବ
ଦମନ ଜାତରେ ଦମନର ଚେଷ୍ଟା ।
କରି ଶୀଘ୍ର ଧୃତ—
ଆଦେଶିଲେ ଆମ୍ଭ—
ଅଣିବାକୁ ହେବ କାରାଗାରେ,

ତେଣୁ ଜଣାଇଲ;
କବାଦେଶ ହେବ ଶ୍ରୀଛମୁରୁ ।

ଦୁର୍ଜ୍ଜନ ସିଂହ – ( ଦଣ୍ଡାୟମାନ ଓ ଗମନୋଦ୍ୟତ ଭାବେ )
ମନ୍ତ୍ରୀ !
ଅନନ୍ତ କାଳମ୍ଭେ —
କର ରାଜଶକ୍ତି ବଳେ ଦୁଷ୍ଟଙ୍କୁ ଦମନ,
କରଣ ଶୃଙ୍ଖଳାବଦ୍ଧ
ଦଅ ସମୁଚିତ ଦଣ୍ଡ;
ରାଜଦ୍ରୋହଦମନ ଅଟେ ରାଜାର କର୍ତ୍ତବ୍ୟ ।
ଦୁଷ୍ଟଗଣେ ଦେଲେ ଦଣ୍ଡ
ଭୟରେ ନୋହିବେ ଅନ୍ୟ
ରାଜଦ୍ରୋହେ ଉତ୍ସାହିତ ।
ସଚିବ !
ସର୍ବାଗ୍ରେ କର୍ତ୍ତବ୍ୟ ଅଟେ
ବ୍ୟବସ୍ଥା ଏଥିର ।
ଯାଏଁ ମୁହିଁ ଶୟନ କକ୍ଷକୁ,
ତୁମ୍ଭେ ମଧ୍ୟ ଯାଅ ହେ ଅବାସେ ତବ ।

ଶରଣସିଂହ—ଯଥା ଆଜ୍ଞା ।

( ମନ୍ତ୍ରୀର ଅଭିବାଦନ ଓ ପ୍ରସ୍ଥାନ )

**ଯବନିକାପତନ**

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

### ପଲ୍ଲୀକୁଟୀର

( ଜ୍ୟୋତିଃ ଚନ୍ଦ୍ରର ଗୃହ )

ଜ୍ୟୋତିଃ ଚନ୍ଦ୍ର—ବନ୍ଧୁ !

ଉପସ୍ଥିତ କି ଦୁର୍ଯୋଗ କାଳ !
ଗୃହେ ମମ ମାତା
ବୁଭୁକ୍ଷିତେ ପିପାସିତେ ରୋଗେ ଶଯ୍ୟାଶାୟୀ ।
ନାହିଁ ପାନାହାର, ଏ କି
ଦେଖୁଁ ଦେଖୁଁ ବର୍ଷିକା
ରାଜ୍ୟେ ଦୁର୍ଭିକ୍ଷ ଆଗତ,
ତେଣୁ ସର୍ବଜନ ନ ପାଇ ଆହାର
ହାହାକାର କରୁଛନ୍ତି ସର୍ବ ଦେଶବାସୀ !
ଏଣେ ଚିକିତ୍ସା ବିହୁନେ—
ଚିକିତ୍ସକ ବିନେ
ବୃଦ୍ଧି ହୁଏ ବେଳୁବେଳ ଜନନୀର ରୋଗ ।
ଦେଖି ମମ କଷ୍ଟ ପ୍ରତିବାସୀ ଏକ
ଦେଇଥିଲେ ଭିକ୍ଷା,
ଗଲା ଦିନ ଗୃହ

ଦୁଇଖଣ୍ଡ ଅଛ ମାତ୍ର ସାମାନ୍ୟ ରୋଟିକା
ରୋଗିଣୀ ଜନନୀପାଇଁ ।
ଦେବ ଅଜ ମାତ୍ର ପଥ୍ୟର ସମ୍ବଳ—
ଯାଏଁ ଜନନୀଙ୍କି ପ୍ରଦାନବ ତାହା ।

( ଉତ୍ଥାନ ଓ ମାତାଙ୍କ ରୋଗ ଶଯ୍ୟା ନିକଟରେ ପ୍ରବେଶ ପୂର୍ବକ )

ମା ! ମା !
ଦେଖ ଚକ୍ଷୁ କରି ଉନ୍ମୋଚନ !
ଅହା ! ବୁଭୁକ୍ଷିତା-ପ୍ରପୀଡ଼ିତା ଜନନୀ ମୋହର

ମିରାବାଈ—( ସଜଳ ପଲକ ଫେରି ) କିଏ ?
ବାପ ଜ୍ୟୋତିଃ ଷିଦ୍ଧ ! ହୃଦ ରତ୍ନହାର !
ଅନ୍ଧର ଲଉଡ଼ି !
ଅସମୟେ ଏ ରୋଟିକା ଦୁଇ
କିଏ ଦେଲା ?
ବତ୍ସ ରେ !
ଦୁଇଦନ ରହିଅଛୁ ଉପବାସେ,
ଏହା କର ତୁ ଅହାର;
ନାହିଁ ମୋର କ୍ଷୁଧା ଛଳେ ମାତ୍ର ।

ଜ୍ୟୋତିଃ ଷିଦ୍ଧ—( ରୋଟିକୁ ଛିନ୍ନଭାଗ କରି )—
ଜନକ ! ନିଅ ଏ ଖଣ୍ଡିକ,
କର ଗୋ ଭୋଜନ,

ପଥ୍ୟ ବିନେ କି ଗୋ ତବ ରହିବ ଜୀବନ ?
ମୁଁ ମଧ୍ୟ ଏ ଖଣ୍ଡ କରିବି ଆହାର,
ଏ ସଞ୍ଚିତ ଅନ୍ୟ ଖଣ୍ଡ
କାଲି ପଥ୍ୟ କରିବ ଜନନୀ ।

( ମାତାଙ୍କୁ ଖାଇବାକୁ ଦେଇ ନିଜେ ଭୋଜନ ପୂର୍ବକ ହସ୍ତ ଧୋଇବା )

ମିର୍ବାଈ—ଆହା ! ବାପଧନ ମୋର,
ନୟନ ପିତୁଳା,
ଏଇ ଅନାଥିନୀ ଜନନୀର ଗଣ୍ଠିରତ୍ନ ହୁହ ।
ଦେଖି ଏ ବିକଳ ଦୃଶ୍ୟ
ହୁଏ ତୋର ଅଭାଗିନୀ ଜନନୀର—
ବକ୍ଷ ବିଦାରିତ,
ଚେତ ଉଠେ ପୂର୍ବ ସ୍ମୃତି ହୃଦୁଁ ;
ପାପୀୟସୀ ଅଭାଗିନୀ ମୁହିଁ
କରିଥିଲି କେଉଁ ପାପ
ତେଣୁ ପ୍ରାଣନାଥ ତେଜିଲେ ଅମ୍ଭଙ୍କୁ ।
ଅନାଥିନୀ ମୃଗୀ
ବତ୍ସ ସହ ବ୍ୟାଧ ଭୟେ ଯେସନ୍ତେ—
ସେହୁ ହୁଅଇ ଅଧୀର,
ତଥା—
ପ୍ରାଣସମ ପୁତ୍ର ପ୍ରାଣସଙ୍କଟର ଦେଖେ
ଏ ଦୀନ ଅବସ୍ଥା ।

ଦିନେ ଯା'ର ପିତା,
ହୋଇଥିଲେ—
ଶତ ସେନାନୀର ଅଗ୍ରପୁରୁଷ
ହାୟ !
ସେହିଦିନ ଆଉ ଏହି ଦିନ
ପିତାଗୁଣେ ସେବୁଥାନ୍ତେ —
ତୋତେ ଶତ ଶତ ଭୃତ୍ୟ,
ହାୟ ! ବିଧି !
ଏ କି ଅବିଧି ତୁମର ?
ଜନ୍ମ ବିଚାର ତୋର ହାୟ ରେ ନିୟତି !
ନ ଯାଏ ପରାଣ କିପାଁ
ଏ ପାଷାଣ ବକ୍ଷ ପାଷାଣ ପରାଣ ଛଡ଼ ?
ଓହୋ ! ବିଭୁ ! ବିଭୁ !

ଜ୍ୟୋତିଃ ସିଂହ—ଏ କି ମାତା ?

ବେଗେ ଶୀର୍ଣ୍ଣା ଅଧୀର ଚରଣେ—
କିପାଁ କର ଦୁଃଖ ଶୋକ ?
ଏହା ବିଧିର ବିଚାର;
ସେ ମଙ୍ଗଳମୟ
କି ଅଲକ୍ଷ୍ୟ ଲକ୍ଷ୍ୟରେ ପୂରଣେ
କରନ୍ତି ଏତାଦୃଶ ଘଟଣା ସ୍ଥାପନ;
କପୋଳ ଲିଖନ—

ଖଣ୍ଡିବ କେ ? ମାନବ ମାନଙ୍କେ
ପରିତ୍ରାଣ, ଯାହା ନୋହେ—
ଦେବଗଣେ ଯାହା ।
ଏ ଅଭାଗା ପୁତ୍ର ତବ
ଅଭାଜନ ଚରଣ ପୂଜନେ,
ଏକମାତ୍ର ଜନମର—
ସାମାନ୍ୟ ପଥ୍ୟଟି ନ ପାରଇ ଦେଇ ।
ଭାଗ୍ୟ ଦୁର୍ବିପାକ କାଳ
ଆଗତ ବିକଟ ମୂର୍ତ୍ତି ଦୁର୍ଭିକ୍ଷ ରାକ୍ଷସୀ
ସମ୍ମୁଖେ ଆମ୍ଭର,
ଏଣେ ରାଜଭୟେ ଶତ୍ରୁ ଭୟେ
ହୋଇଣ ଶଙ୍କିତ
ଶଙ୍କରର ଅଛୁ ହୋଇ ।

( ନେପଥ୍ୟେ ଅଶ୍ୱ ହ୍ରେଷା ଶବ୍ଦ ପୁଣି ସଚକିତେ ପ୍ରସ୍ଥାନ )

## ପଟ୍ପରିବର୍ତ୍ତନ



# ଦ୍ୱିତୀୟ ଦୃଶ୍ୟ

## କୁଟୀର ଫାଟକ

( ଜ୍ୟୋତିଃସିଂହ ପ୍ରବେଶ ହୋଇ କର୍ଣ୍ଣ ଡେରିବା )

ନେପଥ୍ୟେ—( ପୁନଃ ପୁନଃ କବାଟରେ ମୁଷ୍ଟ୍ୟାଘାତ ଶବ୍ଦ ଓ ଦ୍ୱାର ଫିଟାଅ, ଦ୍ୱାର ଫିଟାଅ ଶବ୍ଦକରଣ )

ଜ୍ୟୋତିଃସିଂହ—( ଜଲା କବାଟ ଛିଦ୍ରରେ ଚାହିଁ )
( ସ୍ୱଗତ ) କି ଆଶ୍ଚର୍ଯ୍ୟ !
ଏ ଯେ ସୈନ୍ୟ ଦ୍ୱୟ ସେନାପତି ସହ
କରୁଛନ୍ତି କ୍ରୋଧଭରେ କବାଟେ ଆଘାତ—
ବିଳମ୍ବରେ କିବା
ପଶିବେ ସେ ବଳାତ୍କାରେ
ଦ୍ୱାର ଉତ୍ପାଟନ କରି ।

( ପ୍ରକାଶ୍ୟେ ) ସ୍ଥିର ହୁଅ,
କରାଘାତ ନ କର କବାଟେ;
ଦ୍ୱାର କିପାଁ କର ଉତ୍ପାଟନ ?
କିଏ ତୁମ୍ଭେ ?

ନେପଥ୍ୟେ ସୈନିକଗଣ—ରେ ପାଷଣ୍ଡ !
ନ ଖୋଲିଲେ [illegible]
ଦ୍ୱାରଦେଶେ [illegible]

କାଳପାଶ ଧରି ଆଗତ ଶମନଦୂତ
ଶୀଘ୍ର ଖୋଲ୍ ଦ୍ୱାର ( ମୁଷ୍ଟ୍ୟାଘାତ ),
ଫିଟାଅ କବାଟ !

କ୍ୟୋଡଃ ସିଂହ—( ଦ୍ୱାର ଉନ୍ମୋଚନ କରିବା )

ସେନାପତି—( ୨ୟ ସିପାହୀ ପ୍ରତି )
କେଉଁଠାରେ କ୍ୟୋଡଃ ସିଂହ ?
ଦେଖାଅ ? ଚହ୍ନାଅ ମୋତେ
ଅନତି ବିଳମ୍ବେ !

୨ୟ ସିପାହୀ—ଏହି ସେ ଦୁର୍ବୃତ୍ତ —
ରାଜଦ୍ରୋହୀ ନରାଧମ
ସମ୍ମୁଖେ ଆମ୍ଭର।

କ୍ୟୋଡଃ ସିଂହ—(ଦ୍ୱିତୀୟ ସିପାହୀର ହସ୍ତଦ୍ୱୟକୁ ହଠାତ୍ ଧରି ପକାଇବା ଓ ମଲ୍ଲଯୁଦ୍ଧ କରିବା । ୨ୟ ସିପାହୀ ମଲ୍ଲ ଯୁଦ୍ଧଦ୍ୱାରା ହସ୍ତରେ ଆଘାତ ପାଇ ଭୂମିରେ ପତିତ ହେବା ଓ ୨ୟ ସିପାହୀର ଖଡ୍ଗ ନିଜ କରେ ନେଇ ୧ମ ସିପାହୀର ସହିତ ଅସ୍ତ୍ରଯୁଦ୍ଧ କରିବା । କ୍ୟୋଡଃ ସିଂହ ଅସ୍ତ୍ରଦ୍ୱାରା ୧ମ ସିପାହୀ ଆଘାତ ପାଇ ଭୂମିରେ ପତିତ ହେବା )

ସେନାପତି—( ୩ୟ ସିପାହୀ ପ୍ରତି )
ଶୀଘ୍ର ପାଷଣ୍ଡ କ୍ୟୋଡଃ ସିଂହକୁ ଧୃତକରି ବନ୍ଧନକର !

୩ୟ ସିପାହୀ—( କ୍ୟୋଡଃ ସିଂହ ଅସ୍ତ୍ର ତୋଳନ କଲା ସମୟେ ସେନାପତି ନିଜ ଅସ୍ତ୍ରଦ୍ୱାରା କ୍ୟୋଡଃ ସିଂହର ଅସ୍ତ୍ର ଭୂମିସାତ୍ କରିବା ।

ଲକ୍ଷ ବ୍ୟର୍ଥ କଲାପରେ ସେନାପତି ଓ ୩ୟ ସିପାହି
ଜ୍ୟୋତିଃ ସିଂହଙ୍କୁ ଆକ୍ରମଣ କରି ବନ୍ଧନ କରିବା )

ସେନାପତି—ଜ୍ୟୋତିଃ ସିଂହ ! ଶୀଘ୍ର ଚାଲ,
ଆଜଠାରୁ ରାଜ କାରାଗାରେ
ବନ୍ଦୀ ତୁମ୍ଭେ ।

ଜ୍ୟୋତିଃ ସିଂହ—ବନ୍ଦୀ ମୁହିଁ ? କେଉଁ ଅପରାଧେ ?
ସଂଶୟ ତୁଟାଅ
ପ୍ରଚ୍ଛନ୍ନେ ପ୍ରକାଶି ଅପରାଧ କଥା ।

ସେନାପତି—ଅବକ୍ତବ୍ୟ ରାଜାଦେଶ
ଶୁଣାଇବେ ବିଚାର ସମୟେ ନୃପ,
ବୀରବର ପ୍ରବଳ ପ୍ରତାପ ସେହି
ଦୁର୍ଜ୍ଜନ ନରେଶ ।
ଦୋଷ ରାଜଦ୍ରୋହ
ଏହି ମାତ୍ର ଜାଣୁ ଆମ୍ଭେ ।

( ୩ୟ ଓ ୪ର୍ଥ ସିପାହୀଙ୍କୁ ସେନାପତି ଆଦେଶ ଦେବା )

ନେଇଯାଅ ଆହତ ସୈନିକେ
ଶୁଶ୍ରୂଷାଗାରକୁ ।

୩ୟ, ୪ର୍ଥ ସିପାହୀ—ଯେ ଆଜ୍ଞା ! ( କହି ଆହତ ସିପାହୀ ଦ୍ୱୟଙ୍କୁ
ନେଇ ପ୍ରସ୍ଥାନ । )

ଜ୍ୟୋତିଃ ସିଂହ —ରାଜାର ସମ୍ମୁଖେ

ଶୁଣିବି ମୁଁ ଦୋଷାଦୋଷ !
ରାଜାଙ୍କ ଅବଜ୍ଞା କରି ଶକତି କାହାର ।
ରକ୍ଷକ କରଇ ଯେବେ ଭକ୍ଷକ କରମ;
ସେନାପତେ !
ସ୍ୱଇଚ୍ଛାରେ କରୁଛ ଗମନ,
ନୋହେ ମୁହିଁ ଅତତାୟୀ ତସ୍କର ପ୍ରକୃତି,
ଅନୁରୋଧ ମମ କର ହେ ଗ୍ରହଣ ।
ରୁଗ୍ଣା ମାତା ସହ କରେ ମୁଁ ସାକ୍ଷାତ,
କହ ଅଛେ ପ୍ରବୋଧ ବଚନ ?

ସେନାପତି—ଯେହ୍ନୁ ରାଜଦ୍ରୋହୀ

ନ ପାରୁ ଅନ୍ତର କରି ସଙ୍ଗୁ ତୁ ତାହାକୁ,
ବୃଥା ଅନୁରୋଧ କର,
ନାହିଁ କ୍ଷମତା ଆମ୍ଭର,
ଟାଳିବାକୁ ହେବ ନୃପାଦେଶ ।

( ଜ୍ୟୋତିଃ ସିଂହଙ୍କୁ ଧରି ସେନାପତିର ଦୁର୍ଗାଭିମୁଖେ ପ୍ରସ୍ଥାନ )

## ପଟ୍ଟପରିବର୍ତ୍ତନ

# ତୃତୀୟ ଦୃଶ୍ୟ

## ନବୀ ଗୀରସ୍ଥ ବନ୍ଧାଗ୍ରୋଦ୍ୟାନ

( ଜ୍ୟୋତ୍ସ୍ନାବାଈ ଆସନରେ ଉପବିଷ୍ଟ ଓ ଲଳିତାଦି ସଖୀଗଣ ବସି ପୁଷ୍ପ ଗୁନ୍ଥୁଥିବା )

ଲଳିତା—( ଦୂରକୁ ନିରୀକ୍ଷଣ କରି ) ଦେବ ! ଦୁର୍ଜନ ସିଂହ ଏଠାକୁ ଆସୁଅଛି । ସାବଧାନ !

( ଦୁର୍ଜନ ସିଂହର ପ୍ରବେଶ ଓ ମନ୍ଦହାସ୍ୟେ ଜ୍ୟୋତ୍ସ୍ନା ନିକଟରେ ଗୋଟିଏ ଆସନରେ ଉପବେଶନ )

ଦୁର୍ଜନ ସିଂହ—( ଆବେଗରେ ଗୁଣ୍ଢିକା )

ଜ୍ୟୋତ୍ସ୍ନା !
ମାନସହାରିଣୀ ମୋର !
ସେହୁ ଦିନ
ଦେବାର୍ଚ୍ଚନେ ସଖିମେଳେ
ଏକଲିଙ୍ଗ ଦେବଙ୍କ ପ୍ରାସାଦେ
ତବ ରୂପରାଶି,
ଦେଖି ମୁଗ୍ଧ ହେଲା ମନ ମୋର ।
ହରିଣାକ୍ଷି ! ତୁମ୍ଭ କଟାକ୍ଷରେ
ହୋଇ ମୁଁ ଅଧୀର
ପରିଣୟ ପାଇଁ କେତେ କଲି ଅନୁରୋଧ
ପିତାଙ୍କୁ ତୁମ୍ଭର;

ଶୁଣିଣ ପ୍ରସ୍ତାବ ପିତା ତବ
ସୁଗେ ହୋଇ ଈର୍ଷାରତ
ବୋଇଲେ ଏସନ
ଉପହାସ, ନୁହେଁ କି ଏ ଘୃଣିତ ବଚନ ?
ମୃଗେନ୍ଦ୍ର ନନ୍ଦିନୀ ପ୍ରତି—
କରେ ଆଶା ମେଷ-ଶିଶୁ
ସାମାନ୍ୟ ନଗଣ୍ୟ ଜୀବ !
ଶୁଣି ସେ ବଚନ,
ଅପମାନ ଭାବି ମନେ
ପ୍ରତିହିଂସା ଛଳେ କଲ ସୈନ୍ୟ ସଂଗଠନ ।
ଯଶୋଲ୍ମୀର ଦୁର୍ଗ କରଣ ବିଜୟ
କାର୍ଯ୍ୟସୂତ୍ରେ କଲ ପ୍ରତିହିଂସାର ସାଧନ ।

ଜ୍ୟୋସ୍ନା !
ଘେନ ଅନୁରୋଧ—
ନୁହ ଅସ୍ୱୀକୃତା,
କର ଗୋ ହୃଦୟୁଁ ଦୂର ଅନ୍ତର ବେଦନା ।

ଏବେ ବଳାଅ ମାନସ
ହେବାକୁ ଗୋ ପ୍ରିୟବତୀ ମୋର;
ଅଚିରେ କରିବ ଭୋଗ
ଏ ରାଜ-ବିଭବ;
ଜ୍ୟୋସ୍ନା-ସୁବର୍ଣ୍ଣ-ଲତିକା
ରହିଥିବ ଦୁର୍ଜ୍ଜନ ହିଂହର

ବାହୁଶାଖାଶ୍ରିତେ
ହୋଇଣ ଆନନ୍ଦ ।
କିବା ଅଭିମତ ତବ ?

ଜ୍ୟୋତ୍ସ୍ନା—( ସକ୍ରୋଧେ ଅଳ୍ପ ଉତ୍ଥିତ ଭାବରେ ବସି )
ଅରେ ରେ ଦୁରାତ୍ମା !
ଦୂରହୁଅ ନିକଟରୁ ମୋର ।
ଅରେ ନଷ୍ଟ !
କହୁଅଛୁ ଯେଉଁ ଘୃଣିତ ବଚନ
ପାରେ କି ଭୁଲାଇ କେବେ
ଜ୍ୟୋତ୍ସ୍ନାବାଈ ଦୃଢ଼-ବ୍ରତ ମନ ?
ବିଶ୍ୱାସଘାତକ !
କରି ପ୍ରତାରଣା—
ନଷ୍ଟପଣେ ହରିଅଛୁ ପିତାଙ୍କ ବିଭବ ।
ଏଣୁ ମୋର
ପିତା ଶତ୍ରୁ ତୁହି;
ଅରେ ରେ ବର୍ବର ( ପଦାଘାତସହ ) !
ପଦାଘାତ କରେଁ ତୋର
ଘୃଣିତ ବଚନେ ।
ରେ ଦୁର୍ମତି !
କରୁଛୁ ତୁ ଯେଉଁ ଇଚ୍ଛା
ଜାଣେ ମୁହିଁ;
କରାଘୃତ ମୃଗେନ୍ଦ୍ର-ନନ୍ଦନୀ

ପୁଷ୍ପିବ ଅନ୍ତରେ ତା'—
ବାଞ୍ଛିତ ବାସନା;
ଫଳିବ ଶିଶୁ ହୋଇଲେ ସମୟ
ରକ୍ଷା କରେ ଜାତିର ଗୌରବ ।
ଆଶାଲତା ହେବ ତୋର
ବିଷମୟ ଫଳେ ପରିପୂର୍ଣ୍ଣ !
ନୀଚ ସ୍ଥାନ କରେ ଯେଉଁଠେ ଆଶା—
ଯକ୍ଷ ଚନ୍ଦ୍ର;
କିନ୍ତୁ ହୁଏ କି ପୂରଣ ତାହା ?
ନଷ୍ଟ-ମତି !
ବିସର୍ଜି ଏ ତୋହର ଦୁରାଶା
ଦୂରହୁଅ ନିକଟରୁ ମୋର !

ଦୁର୍ଜ୍ଜନ ସିଂହ—( ଈଷଦ୍ ହାସ୍ୟ )
ଜ୍ୟୋତ୍ସ୍ନା ! କି ଭାବୁଛ ମନେ ?
କରେ କିଗୋ ଭୟ ମୁହିଁ
ଶୁଣିଣ ବଚନ ତୋର ?
କାପୁରୁଷ ନୁହେ,
ନୁହେ ଭୀରୁ—
ଏ ଦୁର୍ଜ୍ଜନ ସିଂହ !

( ଗାମ୍ଭୀର୍ଯ୍ୟରେ ) ସଂଯତ ରସନା କର,
କର ଜିହ୍ୱା ବାକ୍ୟ ନିୟନ୍ତ୍ରଣ !
ତବ ଏ କଠୋରବାଣୀ,

ଦେବ କଷ୍ଟେ ତୁମ୍ଭଙ୍କୁ ଯାତନା;
ସାବଧାନେ କହ କଥା ।
ଜ୍ୟୋତ୍ସ୍ନା ! ଥାଅ ଜାଣି ମନେ ତବ,
ନ ହେଲେ ବନ୍ଦିନୀ
ଏହି ଘର ଅବରୋଧେ
ଦିନ ଯିବ ତବ ।
ଭାବୁଛ କି
ଅଟେ ରାଜପ୍ରାସାଦ ନଜର ?
ଭ୍ରାନ୍ତ ଆଶା
ଉପେକ୍ଷିତ କର ଗୋ ମାନସୁଁ ।
ଥିଲା ଦିନେ ଏହି ଦୁର୍ଗ
ତବ ପିତା କରେ,
କିନ୍ତୁ ଏବେ
ମୋହର ହସ୍ତରେ ସମସ୍ତେ ଅଧୀନ ।
ଏବେ ଜାଣ ! ଏହି ଦୁର୍ଗ
ମୋହ ବାକ୍ୟେ ଅବରୋଧାଗାର;
ଏତେବେଳେ
କର ଚେଷ୍ଟା. ଅଛି ବେଳ—
ହେଲେ ଅଙ୍ଗୀକାର ତବ
ହୋଇବ ତୁମ୍ଭର ଭୋଗ
ଏ ରାଜ ବିଭବ;
ନୟି ଆଶା ଛାଡ଼ି ମନ ତବ ।

ଯଥା ସେହିନିରୁଦ୍ଧା ଭୁଜଙ୍ଗୀ
ହୋଇଲେହେଁ କ୍ରୁଦ୍ଧା
ନ ପାରଇ ଦଂଶି,
ଯେଣୁ ନ ଥାଇଟି ତାର—
ଦଂଶନ ପ୍ରାକର୍ମ ।
ତଥା—
ଦୁର୍ଗ ସେହିକାରେ ଅଛ
ହୋଇଣ ବନ୍ଦିନୀ—
ଦୁର୍ଜ୍ଜନ ସିଂହର କରେ;
ଏବେ ଇଚ୍ଛାମତେ କରିପାରେ—
ଯଥେଚ୍ଛା ଶାସନ ।

ଜ୍ୟୋତ୍ସ୍ନା—( ସକୋଧେ ) ସ୍ୱେଚ୍ଛାଗୃଧ୍ର ଦସ୍ୟୁ !
ରେ ବର୍ବର !
ଦେଖି ତୋର ଅମିତ ଅଙ୍କୁର
ହସେ ଭାଗ୍ୟଦେବୀ ।
ଥିଲେ'ବଳେ,
କରିବେ ସେ ନ୍ୟାୟାନ୍ୟାୟ
ଉଚିତ ବିଚାର ଦିନେ;
ଚଳିବ ନାହିଁ ଟି ଏହା
ନୋହିବ ଅନ୍ୟଥା;
ରେ ଦୁରାତ୍ମା ।
ଦୂରହୁଅ ନିକଟରୁ ମୋହର !

ଦୁର୍ଜନ—( ବନ୍ଦୁପରେ ହାସ୍ୟକରତ ଦଣ୍ଡାୟମାନ )

ପ୍ରଗଲ୍ଭା ବାଳକା !
ଏ କଟୁ ବଚନ !
ଏ କଟୁ ବଚନ ଦେବ କଷ୍ଟେ
ଅସୀମ ଯନ୍ତ୍ରଣା ।
ଅଚ୍ଛା
କର ଯାହା ଇଚ୍ଛା ତବ ।
ପାଅ ତୁମ୍ଭ କୃତ କର୍ମ ଫଳ,
ସଖୀ ସହ ତୁମ୍ଭେ
ଥାଅ ହୋଇ ଅବରୁଦ୍ଧ ଅନ୍ତଃପୁରେ,
କରୁଣା ମୋହର ନ ଲଭିବା ଯାଏ ।

( ପ୍ରସ୍ଥାନ )

ଜ୍ୟୋତ୍ସ୍ନା—( ଶାନ୍ତ ଭାବେ ବସିବା )

ଲଳତା !
ଦେଖ ପାପିଷ୍ଠର ପ୍ରଲୋଭନ,
କପଟ ଭକ୍ତି—ଭୟ ପ୍ରଦର୍ଶନ,
ଆଉ ପ୍ରଲାପ ବଚନ !
ଟଳିବ କି ଶତ ଚେଷ୍ଟା ବଳେ
ମାନସ ମୋହର,
ଯେତେଦିନ ବହୁଥିବ
ଧମନୀରେ ଉତପ୍ତ ଶୋଣିତ ?

ସେଦିଠଦନ
କର୍ତ୍ତବ୍ୟ ପଥରୁ ବିପଥଗାମିନୀ
ନ ପାରେ କେ କରି ମୋତେ ।
ବିଭେ ! ଦିଅ ଶକ୍ତି,
କରେଁ ମୋ କର୍ତ୍ତବ୍ୟ ସଦା—
ଥିବା ଯାଏ ପ୍ରାଣ,
ଛନ୍ଦୋଗତ ସୁବ୍ରତ ପାଳନେ
ଯାଉ ପ୍ରାଣ
ରାଜ୍ୟ-ଧନ, ନାହିଁ ଚିନ୍ତା,
କିନ୍ତୁ ରକ୍ଷା ହେଉ ଗଉରବ
ସତୀତ୍ୱ-ସମ୍ମାନ ।

( କୃଷ୍ଣାର ବିକଳ କଣ୍ଠେ ଅଶ୍ରୁପୂର୍ଣ୍ଣ ନେତ୍ରେ କରଯୋଡ଼ ସ୍ତବଗାନ )

( ସ୍ତବ )

—ଗୀତ—

ଅଶ୍ରୁ ନୀରେ ଭସି କାରାଗାରେ ଅନ୍ଧ
ଡାକ ଡାକ ସଖା ପାଏନା ସାଦ୍ଧା—
ଗରବ ଗଞ୍ଜନ ବିପଦ ଭଞ୍ଜନ
ବାନା କିବା ତବ ଉଡ଼େ ନା ଅଦ୍ଧା !
ସତୀର ସମ୍ପଦ ତୁମେ ହେ ପରବ
ବଢ଼ାଇ ରଖ ହେ ଅଭୟ ବାଦ୍ଧା—

ଚିର ଦୁସ୍ୱପ୍ନର ପାପୀ ଦୁର୍ଜ୍ଜନର
ବିଷାଦ କବଳେ ପଡେ଼ ମୁଁ ଅନ୍ଧା ।

ଦେଇଚ ଦେହ ଯେତେ ବେଦନାର ବୋଝ
ସହିବାକୁ ଛଳେ ମିଳେ ନା ବାନ୍ଧା,

ଧଇରଜ ଦାନେ ଅବଳାର ପ୍ରାଣେ
ଦେଖାଦିଅ ଆସି ଭୁବନ ନାନ୍ଧା !

ଲଳିତା—ପ୍ରାୟ ଅସ୍ତମୁଖ ଦିନମଣି,
ସନ୍ଧ୍ୟା ହେଉଛି ଆଗତ—
ଚାଲ ଦେବ ! ଯିବା ଗୋ ପ୍ରାସାଦେ ।

( ସମସ୍ତେ ପ୍ରସ୍ଥାନ )

## ପଟ୍ ପରିବର୍ତ୍ତନ



## ଚତୁର୍ଥ ଦୃଶ୍ୟ

### କାରାଗାର

( ବନ୍ଦୀ ଅବସ୍ଥାରେ ଜ୍ୟୋତ୍ସ୍ନାଙ୍କ ଗୃହ ଓ କାରାକକ୍ଷ
ବାରଦାରେ ପ୍ରହରୀ ଦ୍ୱୟ )

( ୧ମ ପ୍ରହରୀ ବନ୍ଧୁକ ଧାରଣ କରି ପହରା ଦେଉଥିବା ଓ ଦ୍ୱିତୀୟ ପ୍ରହରୀ ନିକଟରେ ନିଦ୍ରା ଯାଇଥିବା । ନିକଟସ୍ଥ ଘଣ୍ଟାରେ ୧୨ଟା ବାଜିବା ଶବ୍ଦ ଶୁଣି ୧ମ ପ୍ରହରୀ ଦ୍ୱିତୀୟ ପ୍ରହରୀକୁ ପହରା ବଦଳାଇବା ନିମନ୍ତେ ଡାକ ପକାଇବା, ନ ଉଠିବାରୁ ଶୟନ ନିକଟକୁ ଯାଇ ହାତରେ ଝୁଙ୍କି— )

୧ମ ପ୍ରହରୀ—ଏ—ଉଠ୍—ଉଠୁନାହୁଁ କାହିଁକି ରେ ନାରଣ ! ବାରଟା ସମୟ ହେଲା । ତୋର ପାଳି ଆସିଗଲା, ନେଟି ବନ୍ଧୁକ ଧ, କାରାଗାରରେ ବନ୍ଦୀ, ଜାଣୁ ଠିକି ଏ ବଡ଼ ବଳୁଆ ବନ୍ଦୀ, ସାବଧାନରେ ପହରା ଦେ ଭାଇ ! ମହାରାଜାଙ୍କ ବଡ଼ ଆକଟ ବର୍ଦ୍ଧୀ । ସେ ଫସକି ଗଲେ ସମସ୍ତଙ୍କ ମୁଣ୍ଡକାଟ ହୋଇ ଶାଇ ପଡ଼ଶା ବଂଶଯାକ ଶୂଳୀରେ ଯିବେ ରେ ବାବା !

( ୧ମ ପ୍ରହରୀ ପୂର୍ବ ପ୍ରହରୀର ନିଦ୍ରିତ ଥିବା ସ୍ଥାନରେ ଯାଇ ଶୋଇବା ଓ କିଛିକ୍ଷଣ ପରେ ନିଦ୍ରିତ ହେବା )

୨ୟ ପ୍ରହରୀ—( ଉତ୍ଥାନ ପୂର୍ବକ ) ଓହୋ ! ଶଳାଟା କେଡ଼େ ନିଦ ଭାଙ୍ଗିଦେଲା । ଭାରି ନିଦଟା ଲାଗିଥିଲା, ଆଖି ଫିଟୁ ନାହିଁ । (ଆଖି ମଳି) ନାଁ, ଆଖି ପୋଡ଼ି ହୋଇପଡୁଛି ଦେଖେଁ ଭାଙ୍ଗ

ଚଲମଟାଏ ଲଗାଏଁ—ଗରମ ବାଜି ଯଦ ନିଦ ଭାଙ୍ଗିଯାଏ ତା ହେଲେ ଯାଇ ମିଳନ୍ତା । ( ଚଲମ ଟାଣିବା ) ନାଁ, ହେଲା ନାହିଁ, ଟିକିଏ କାନ୍ଥରେ ଆଉଜି ରହେଁ । ସମ୍ଭାଳ ହେଉ ନାହିଁ, ତାଙ୍କ ଫାଙ୍କ ତ ଭଲ ଅଛି । ଏତେ ସାନ୍ଧରେ କିଏ ଉଠଣି କରି ଆସିବ ଯେ ଡ଼ର ପଡ଼ୁଛି ।

( କାନ୍ଥରେ ଆଉଜି ଢୁଳାଇ ପଡ଼ିବା )

( ବନ୍ଦୀ ଅବସ୍ଥାରେ ଜ୍ୟୋତିଃ ସିଂହର ବିଷାଦପୂର୍ଣ୍ଣ ଚିନ୍ତା )

(ସ୍ୱଗତ)—ହାୟ ! ବିଧିର ବିଧାନେ
ହେଲା ମୋର ଗୁପ୍ତ ଷଡ଼ଯନ୍ତ୍ର
ମରୀଚିକା ସମ ।
ଏବେ କି କର୍ତ୍ତବ୍ୟ ?
ନିଷ୍ଠୁର ନିର୍ମମ ବଗୃରେ
ଆସି ଏବେ ହେଲି ବନ୍ଦୀ
ସେ ଦୁରାତ୍ମା ଦୁର୍ଜନ କବଳେ !
ନ ଛାଡ଼ିବ କେବେ,
ଜାଣେ ମୁହିଁ ଦେବ ପ୍ରାଣଦଣ୍ଡ;
ଓହୋ ! ହୋଇ ବୀର—
କ୍ଷତ୍ରିୟ କୁମାର ମରିବ ମୁଁ—
ଦେଶବୈରୀ କା-ପୁରୁଷ
ଦୁର୍ଜନ କୌଶଳେ ?
ନା ଅଦେଶ—

ମସ୍ତକରେ କରି ଶିରୋଧାର୍ଯ୍ୟ
କରିବ ମୁଁ ମୃତ୍ୟୁ ଆଲିଙ୍ଗନ !
ହାୟ ! ବିଧି-ଲିପି !
ଥିଲା ମୃତ୍ୟୁ ଯୋଗ—
ନରାଧମ ପାପିଷ୍ଠର କରେ !
ଓହୋ ! ବଡ଼ କ୍ଷୋଭ—
କ୍ଷତ୍ରୀର ମରଣ ସାଜେ
ସମର କ୍ଷେତ୍ରରେ
କଲେ ପ୍ରାଣ ବିସର୍ଜନ,
ରଣ ଯଜ୍ଞଫଳେ ହୁଏ ଅମରତ୍ୱ—
ଅନ୍ତେ ସ୍ୱର୍ଗ ଲାଭ ।
କିନ୍ତୁ, ଅଛି ଆଶା—
ଯଦି ଥାଏ ଧର୍ମ
ଧରି ତଳେ ସତ୍ୟ,
ଚନ୍ଦ୍ର ସୂର୍ଯ୍ୟ ଯଦି ହୁଅନ୍ତି ସତ୍ୟେ—
ଉଦେ ଅସ୍ତ,
ତେବେ କଣ୍ଠେ କଣ୍ଠେ,
ଶତବାର ଉଚ୍ଚସ୍ୱରେ କହେ—
"କଣ୍ଠେ ଜୟ ହେବ" ।
ନ ଲିଭିବ, ନ ଲିଭିବ,
ନ ଲିଭିବ—ବିଦ୍ରୋହ ଅନଳ ।
ମୋ ସମାନେ ଶତଶତ ବୀରେ

ଦେଖିଲେ ଉତ୍ସର୍ଗିବେ ପ୍ରାଣ;
ଦେବେ ଦଣ୍ଡ, କେତେ ବା ସହିବେ—
ତାର ଜମ୍ବୃତ ଅଗାଧ ?
ହେ ପ୍ରଭୋ ମଙ୍ଗଳମୟ !
କି ରହସ୍ୟ ଅଛି ଥୋଇ
ନ ଜାଣେ ମୁଁ ସ୍ୱଳ୍ପବୁଦ୍ଧି ନର;
କିନ୍ତୁ ପ୍ରଭୋ !
ମୋହ ପାଇଁ ନାହିଁ ଛଳେ ଶନ୍ତା
ହାୟ ! ବୃଦ୍ଧା ଜନନୀଙ୍କ ଭବ ମୋର·
ବଡ଼ କ୍ଷୋଭ—ବହୁତ ଯାତନା
ଦଏ ମର୍ମେ ଆଜ ଅସୀମ-ଯନ୍ତ୍ରଣା,
ସେ ଯେ ଜନନୀ ମୋହର
ରୁଗ୍ଣା ଶଯ୍ୟାଶାୟିନୀ
ନ ଦେଖିଲେ କୋଟିସ୍ୱର୍ଗ ମଣେ ଯେହୁ,
ଆଜ ଥିବ କି ସେ ପ୍ରାଣେ ?
ଜନୟିତ୍ରି ! ଫାଟିଯାଏ ବୁକୁ,
ଭାବି ତବ କଷ୍ଟ—
ମୋ ଅଭାବେ ଯୋଗାଇବ
କେହୁ ଅନ୍ନ ଜଳ ?
କେ ଦେବ ସାନ୍ତ୍ୱନା—ଅହା !
ରୋଗେ ଶୀର୍ଣ୍ଣା ପ୍ରପୀଡ଼ିତା ମାତା,—
ଏକମାତ୍ର ଭରସାର ସ୍ଥଳ—

ପୁତ୍ରକୁ ନ ଦେଖି,
ବୃଦ୍ଧା ମାତା, ଦେବ କଣ୍ଠେ ଜୀବନ ବିସର୍ଜି ।
ଦୟାମୟ ! ଦୀନବନ୍ଧୁ !
ରକ୍ଷାକର ଜନନୀଙ୍କୁ ମୋର ।
ଜନନୀ ଗୋ ! ସ୍ନେହ ଜଳଦାନେ
କରିଥିଲ ଏହି ଦେହ ତରୁ ସୁବର୍ଦ୍ଧିତ,
ହାୟ ! ନ ପାଇଣ ଦେଖା
ହେଉଥିବ ବକ୍ଷସ୍ଥାନା ସ୍ମରଣି ପରିୟେ ।
ଦୁର୍ଭାଗା ତନୟ ତବ
ଅଛି କାରାବାସେ
ଆଜ ଯାଏ ଜଣା ଅଳ୍ପକାଳେ—
ଯିବ ଚଳି ଅନନ୍ତଧାମକୁ ।
ନ ଦେଖିଲ ନ ଶୁଣିଲ ତବ—
ସ୍ନେହପୂର୍ଣ୍ଣ ଗଦ୍‌ଗଦ ବଚନ ଆଜ—
ଅଶ୍ରୁପୂର୍ଣ୍ଣ ନେତ୍ର
ଅନ୍ତରେ ଗୋ ମାତୃଦେବୀ
କର ଭକ୍ତ—
ଚିରଦିନ ଲାଗି
ହେଉଛି ମା—ଚରଣୁ ବିଦାୟ ।
ଜନ୍ମଭୂମି ! ଯଶୋଲ୍ମୀର ମାତା !
ତବ କାର୍ଯ୍ୟ ନ ପାରିଲି କରି;
ହାୟ ! କରିଥିଲି ବାଞ୍ଛା

ହେଲୁ ମା ଗୋ ରାଜବନ୍ଦୀ,
ହେବ ଗୋ ଦଣ୍ଡିତ;
କିନ୍ତୁ ମାତା ! ନାହିଁ ଚିନ୍ତା—
ଅଛନ୍ତି ତୋ ଅନ୍ୟ ପୁତ୍ରେ ।
ଦେଇ ବୀର ଶକ୍ତି
କର ମାତ ତବ ଉଦ୍ଧାରଣ ଚେଷ୍ଟା;
ଦୃଢ଼ ଦେଇ ଗୋ ସନ୍ତାନ ହୃଦେ
ରଣ ଉନ୍ମାଦନା,
ଲଭ ବୀରପ୍ରସୂ ଖ୍ୟାତି ।

**ଯବନିକା**



# ତୃତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

ବୈକୁଣ୍ଠ ଅରଣ୍ୟର ଅପରପାର୍ଶ୍ୱ ଦୃଶ୍ୟ

( ପର୍ଣ୍ଣକୁଟୀର ସମ୍ମୁଖରେ ବୃକ୍ଷତଳେ ରାଜା ବିଜୟସିଂହ, ମନ୍ତ୍ରୀ କୃପାଳସିଂହ, ସେନାପତି ରଣଜିତ୍ ସିଂହ ଓ ମହାନନ୍ଦ ଶର୍ମା ବିଦୂଷକ ଆସୀନ )

ବିଦୂଷକ—( ବିଷଣ୍ଣ ବିଷାଦେ ) ମହାରାଜ ! ଏକେ ବନବାସରେ ଖାଇବା ପିଇବାରେ ଯେ କଷ୍ଟ ହେଉଛି ଛାଡ଼ ଦିଅନ୍ତୁ; ଦୁଇରେ ଯୁଦ୍ଧ ଭୟ ମନରେ ଭାବିଲେ ଚିନ୍ତାନଳ ପରି ଅନ୍ତର ଦହି ହେଉଛି ଶୟନେ ଭୋଜନେ ସ୍ଥିତ ଥିବା କମୁନାହିଁ; ଏ ମଧ୍ୟ ଧରିବନ୍ଧା, ଏହାକୁ ମଧ୍ୟ ଏ ଦେହ ସହି ନେଲାଣି ; ତା ଉପରେ ଆଉ ଗୋଟିଏ ବିରହାନଳ ? ମନୁଷ୍ୟଙ୍କୁ ଏ ସମସ୍ତେ ମିଶି ପୋଡ଼ି ଜାଳି ଦେଲେଣି । ହାୟରେ କପାଳ ! ତୋତେ ବିଧାତା ଠାଣୁଆ-ଅସ୍ଥିରେ ଗଢ଼ିଛି ବୋଲି ସିନା—ନୋହିଲେ ତୁ ଦ ଫାଳ ନ ହୋଇ ରହନ୍ତୁ ?

ବିଜୟ ସିଂହ—(ଅଳ୍ପ ହସି) ବିରହ ଅନଳ !

ବୟସ୍ୟ ! ସଦା ତବ ପରିହାସ
ବିପଦ ସମ୍ପଦେ;
ଏକେ ବନବାସ, ରାଜ୍ୟଭ୍ରଷ୍ଟ—
ପରାଣ ସ୍ନେହର ନୟନ ପିତୁଳୀ

ସେହି ଜ୍ୟୋତ୍ସ୍ନା ତୋମା ମୋର
ଅବରୁଦ୍ଧା ଶତ୍ରୁ କରେ;
ଏ ମହା ବିପଦୁଁ
ଅଧିକ ଅଟେ କି ତବ ବିଦୂଷୀ ବିରହ ?

ବିଦୂଷକ—ମହାରାଜ ! ଏହା ପୁଣି ପଚାରୁଛନ୍ତି ? ସେହି ବିଦୁଷୀର ବିରହରେ ରାତ୍ରଦିନ ସଦାବେଳେ ପ୍ରାଣ ଟିକଟି ହେଉଛି ଯିବ ? ଦୁର୍ଜନର ଅତ୍ୟାଚାର-ଦକ୍ଷିଣା ମିଳିବାରୁ ସିନା ବାଟେ ବାଟେ ଆପଣଙ୍କ ନିକଟକୁ ଆସିଲି ବାହାରି ? ପ୍ରତିହିଂସା ପୂରଣ ନ କରି ଛାଡୁଛ ? ହେଲେ ବାହାରି ସିନା ଆସିଲି ମଣିମା, ବ୍ରାହ୍ମଣୀଟାକୁ ମନରୁ ଭୁଲି ହେଉଛି କି ? ମୁଁ ବ୍ରାହ୍ମଣୀକୁ ଯେତେ ଭଲ ପାଉଥିଲି ତା ତ ଆପଣଙ୍କୁ ଅଗୋଚର ନୁହେ । ସେହି ଚିନ୍ତା ଓ ବନବାସଦୁଃଖ ଚିନ୍ତାରେ ମା ଦୁର୍ଗାଙ୍କୁ ସ୍ମରଣ କରି କାଲି ରାତିରେ ଶୋଇଛି, କରୁଣାମୟୀଙ୍କ ସ୍ୱପ୍ନାଦେଶ ହେଲା, "ବତ୍ସ ! ତୋର ପ୍ରେୟସୀ ଭଲଅଛି, ଆଜ ଚିନ୍ତା କାହିଁକି ? ତୁମ୍ଭମାନଙ୍କ ବିପଦ ଅତି ଅଳ୍ପଦିନେ ମୋଚନ ହେବ । ଆଜ ମନେ ରଖ୍ ତୋର ଭୋଜନ କେନ୍ଦ୍ରରେ ବୃହସ୍ପତି ଏ ବର୍ଷଟା ଯାକ ରହିବେ । ତେଣୁ ଖୁବ୍ ସୁଧାମୟ ଉତ୍ତମ ଭୋଜନ ମିଳିବ । ଉଠ୍"—କହି ମା ଅନ୍ତର୍ଦ୍ଧାନ ହେଲେ । ସେତିକିବେଳୁଁ ପରି ଆନନ୍ଦରେ ମୋ ପାଦ ତଳେ ପଡୁନାହିଁ । ଏ ଯୁଦ୍ଧରେ ଜୟ ସୁନିଶ୍ଚିତ, ତେଣୁ ବିଳମ୍ବ ନ କରି ଯୁଦ୍ଧାର୍ଥ-ମାନେ ପ୍ରସ୍ତୁତ ହୁଅନ୍ତୁ । କିନ୍ତୁ ! ମହାରାଜାଙ୍କ ଆଗରେ ଏ ଗରିବ ବ୍ରାହ୍ମଣର ଗୋଟିଏ ପ୍ରାର୍ଥନା ଅଛି ।

ବଜ୍ରସିଂହ—ଶୁଭ ସ୍ୱପ୍ନ ।

ଯୁଦ୍ଧେ ଯିବା ବେଳେ ହୁଅ ସୁସଜ୍ଜିତ,
ସଫଳ ସ୍ୱପନେ—
ଭାବନା କି ?

ବସନ୍ତକ—( ସ୍ୱଗତେ ) ଯୁଦ୍ଧକୁ—ମୁଁ ଯିବ ? ସେ ଭୟଙ୍କର ଯୁଦ୍ଧ-ଯାତ୍ରା ଶବ୍ଦରୁ ମୋତେ କ୍ଷମା ଦିଅନ୍ତୁ ମହାରାଜ ? ମୋର ଏତିକି ମାଗୁଣି ଯେ ମୋତେ ଶିବିରଟାକରେ ପୁରାଇ କବାଟ ଦେଇ ସେ ମଧ୍ୟରେ କିଛି ଖାଇବା ଜିନିଷ ଥୋଇଦେଇ ଛାମୁ ପଛକେ ବଳେ ହୁଅନ୍ତୁ । ନୋହିଲେ ସେ ହାଣ୍ ମାର୍,—ବାପ୍‌ରେ ବାପ—ସେ ଯୋଉଁ ଫର ଖଣ୍ଡାର ଝଲକ, ସୈନ୍ୟଙ୍କ ଧାଁ ଧଉଡ଼, ତର୍ଜ୍ଜନଗର୍ଜ୍ଜନ ଦେଖି ଶୁଣିଲେ— ବଞ୍ଚିବା ତ ଦୂରର କଥା, ନାଁଅଟା କହିଲାବେଳକୁ ବରଡ଼ାପତ୍ର ପରି ଦେହ ଥରି ଉଠୁଛି । ଅଜି ସାକ୍ଷାତରେ ଦେଖିଲେ ପୋଖରୀ—ପରସ୍ତା ହୋଇଯାଇ ପିଲେହି କଞ୍ଚାପାଣି ହୋଇ ଶେଷ୍ । ମହାରାଜ ! ବ୍ରାହ୍ମଣୀର ମୁହଁଟା ଦେଖିବା ପୂର୍ବରୁ କମିତ ଭଲରେ ଭଲରେ ଘରରେ ପହଞ୍ଚିବ, ନୋହିଲେ ସ୍ୱପ୍ନଟା ସ୍ୱପ୍ନରେ ପରିଣତ ହୋଇଯିବ ।

ରାଜା ବଜ୍ରସିଂହ—ବଡ ଭ୍ରାନ୍ତ କଥ ତବ,
ଶିବିରରେ ନ ରହିବେ ଅଜି କେହି,
ସେନା ସୈନ୍ୟ ଯିବେ ସର୍ବେ
ସମର ପ୍ରାଙ୍ଗଣେ ।

ଯଦି ଏକା ରହି ଶିବିରରେ ତୁମ୍ଭେ
ଅବହେଳେ ହେବ ତେବେ
ବିପକ୍ଷୀୟ କରକବଳିତ ।

ବିଦୂଷକ—( ବିକଳ ଭୟରେ ) ବିପକ୍ଷର କରକବଳିତ ! ମରିଗଲି, ମରିଗଲି ! କ୍ଷମା ହେଉ ମହାରାଜ ! ଏ ଗରିବ ବ୍ରାହ୍ମଣ ଯଦି ଯୁଦ୍ଧରେ କେବେ ଅଜ୍ଞାନରେ ଦୋଷ କରି ଥାଏ, ତେବେ ଯେ ଦଣ୍ଡ ଦିଅନ୍ତୁ ପଛେ ଏ ଯାହାକୁ ରକ୍ଷା କରନ୍ତୁ ? ଯୁଦ୍ଧ ସଙ୍ଗଛଡ଼ା କରନ୍ତୁ ନାହିଁ । ଯିମିତିରେ ମୋ ଶବାଶ୍ରିତ ପଦରୁ ଦିଆହୋଇ ମଝିରେ ମଝିରେ ଯିବ—ଫିଁହଗି ସେନାଗଣ ଯିମିତି ଡାକତରକରେ ଜଗନ୍ତି ସେ ବିଷୟରୁ ଯୁଦ୍ଧ ଅବଧାନ ହୋଇଥିବେ । ଦୈବକଲ୍ପ ଯଦି ଯୁଦ୍ଧଟା ଗୁରୁତର ହୁଏ ତାହାହେଲେ ମୋ ସବାସିବୁଢ଼ା ଲୋକେ ଅପେକ୍ଷା ନ କରି ଏକା ନିଶ୍ୱାସକେ ମୋ ବ୍ରାହ୍ମଣୀର ବାପଘରଠିକି ଦଉଡ଼ି ଦଉଡ଼ ପହଞ୍ଚାଇ ଦେବେ । ମହାବାହୁ ! ଏ ବ୍ରାହ୍ମଣ ପିଲାଟି ସୁରୁଖୁରୁରେ ବଞ୍ଚି ପହଞ୍ଚି ଗଲେ ଯୁଦ୍ଧଙ୍କ ଏତେ ଦିନର ପୋଷିବା ଯଶ ରହିବ, ଶତାଶ୍ୱମେଧର ଫଳ ପାଇବେ ।

ବିଜୟ ସିଂହ—ହେଉ ତେବେ;
ତବ ଇଚ୍ଛାମତ କାର୍ଯ୍ୟ ସମ୍ପାଦନେ—
ଆଦେଶିବି ସୈନ୍ୟଗଣେ ।

ବିଦୂଷକ—( ସ୍ୱଗତ ) ରକ୍ଷା ମିଳିଗଲା । ତ୍ରାହିମାଂ, ତ୍ରାହିମାଂ । ମା ଦୁର୍ଗେ ! ମା ଦୁର୍ଗେ ! ଶିବଶମ୍ଭୋ-ଶିବଶମ୍ଭୋ ! ନୋହିଲେ ଏ ବ୍ରାହ୍ମଣ ପିଲା ଆଜି ଥିଲା କି ! ଦିନ ପାଞ୍ଚଟା ସଂସାର ଭୋଗ

କର ନାହିଁ ହେ। ! ଏପରି ସୁନ୍ଦର ସଂସାର ଏପରି ଖାଇବା
ଶଙ୍କ କୋଉଁ ସ୍ୱର୍ଗରେ ଅଛି କି ନା ସନ୍ଦେହ । ବସିଗଲ ।

ବିଜୟ ସିଂହ—ମନ୍ତ୍ରୀ !
ବିଷମ ସାହସେ
ଅମ୍ଭ ମୁଷ୍ଟିମେୟ ସୈନ୍ୟ ନେଇ
କରିଛୁ ଭରସା
ଦୁର୍ଗସ୍ଥିତ ବିଶାଳ ବାହିନୀ
କରିବାକୁ ବିଜୟ ମାନସେ ।
କହ ମନ୍ତ୍ରୀ !
ବିଶାଳ ସେନାରେ କରି ଯୁଦ୍ଧ
ମମ ସାମାନ୍ୟ ସୈନିକେ
ହେବେ ନିଷ୍ଟେ ପରିହତ,
ହୁଏ ନାହିଁ ଜୟ ଆଶା ମୋର;
କି କରିବା, କି ଉପାୟ କରିବା ସାଧନ ?
ସେନାପତେ !
ତବ ଅଭିପ୍ରାୟ କିବା କରନ୍ତୁ ବ୍ୟକତ ।

ମଃ କୃପାଳସିଂହ—ମହାରାଜ !
କିପାଇଁ ଚିନ୍ତିତ ?
ଶୁଣିଛି ମୁଁ ଜନରବେ—
ପୂର୍ବ ସେନାବୃନ୍ଦ
ଦୁର୍ଜନର ବିପକ୍ଷରେ ଅଛନ୍ତି ସମସ୍ତେ ।

ଆଜି ପ୍ରଜାଚୟ ଆରମ୍ଭି ବିପ୍ଳବ
ପାଷଣ୍ଡର ପାଷଣ୍ଡ ଶାସନେ
ସର୍ବେ ଖଡ୍ଗହସ୍ତ,
ଭିଆଇ ଚକ୍ରାନ୍ତ ଏକ
କ୍ଷତ୍ରୀୟ କୁମାର, ଏକନିଷ୍ଠ କରି
ଅଧିବାସୀ ବୃନ୍ଦେ
ନେଇଛନ୍ତି ନେତୃତ୍ୱ ତାଙ୍କର—
ନିଜ କରେ ।
ଏବେ ହୋଇଲେ [illegible]
ଅପି ଛଡ଼ିବେ ସେ
ଶ୍ରୀଛମୁଙ୍କ ପଦ ।
କରିବା ସତ୍ତ୍ୱରେ ଦେବ
ସମର୍ଭିପାନ ।

ସେନାପତି—ମହାରାଜ !
ଏ କ୍ଷୁଦ୍ର ବାହିନୀ
ନୁହନ୍ତି ସାମାନ୍ୟ ।
ସର୍ବେ ଯୁଦ୍ଧବିଶାରଦ,
ଆଜି ସାହାସିକ ବୀର—
ନୋହୁ ପଶ୍ଚାଦ୍‌ପଦ—
ପ୍ରାଣପଣେ ବୀରଦର୍ପେ କରିବେ ସମର,
ନୋହିବେ ସେ ନିରୁତ୍ସାହ କେବେ ।
ଦେଇଛୁ ପୁଣି [illegible]ଦାନ;

ସେନାପତି ମୁହିଁ
ଜାଣେ ଯୋଦ୍ଧାଙ୍କ ଅନ୍ତରକଥା ।

ବିଜୟ ସିଂହ—ଉତ୍ତମ ବାରତା
ସେନାପତେ ! କର ସବେ
ଜୟ ଗାନ, ଅତ୍ର ସୈନ୍ୟର ତୁଳନା—
ଅନତିବିଳମ୍ବେ ।

( ସମସ୍ତେ ପ୍ରସ୍ଥାନ )

## ପଟ୍ଟପରିବର୍ତ୍ତନ



## ଦ୍ୱିତୀୟ ଦୃଶ୍ୟ

ରାଜପଥ

( ଜ୍ୟୋତିଃ ସିଂହର ସଙ୍ଗୀ ଓ ସିନ୍ଧୁଗଣ କଥୋପକଥନ ହୋଇ )

ହରଗୋପାଳ ସେଠ—ଭାୟା ! ଦୁର୍ଜନ ସିଂହ ବଗ୍‌ର ଦେଖ୍‌ରେ ସେ କଲ୍‌କା ଶୁଖ୍‌ ଯାତାହେ, କର୍ମୋଷୀକୋ ଲଠି ଦୋଷୀକୋ ଲଠି ! ଭଗବାନ୍‌ନେ ଐସା ଅତ୍ୟାଚାର୍‌ ସେ କବ୍‌ ରକ୍ଷା କରେଁ ଏତୋ ଘରବ୍ରତା ଅଂଶୁ ଏ ପାଣିକା ହାଲତ ହେଉଛି !

ରାମଧନ ପାଣ୍ଡେ—ହାଃ ଜ୍ୟୋତିଃ ସିଂହ ! ତୁମ୍ଭର କପାଳରେ କି ଏହା ଭୋଗ ଥିଲା—ଏପରି ଦୁର୍ଯୋଗ ଘଟଣା କି ବିଧାତା ତୁମ୍ଭପାଇଁ ଘଟାଇବାକୁ ରଖିଥିଲା ?

ହରନାଥ ପାଣ୍ଡେ—ହେ ମହାଶୟ ଜ୍ୟୋତିଃ ! ତୁମ୍ଭ ଭାଗ୍ୟରେ ଦୁର୍ଜନ—ସିଂହର ତମସାବୃତ କାରାକକ୍ଷେ ଆବଦ୍ଧ ହେବାକୁ ଥିଲା ! ହାୟରେ କାଳ !

ଦୀନଦୟାଳ ଭୂମ୍ୟାଧିପ—ଏ ପରା କଳିକାଳ ? ଏ କଳିକାଳକୁ କେହି କଳି ନ ପାରିବାରୁ ସିନା କଳିକାଳ ନାମ ହୋଇଛି । ଏ କି ଅତ୍ୟାଚାର । କି ଭୀଷଣ ନିଷ୍ଠୁରତା ! ହାୟରେ ଯୁଗ ।

ହରଗୋପାଳ ସେଠ—କଳିକାଳ ବୋଲ୍‌ନେସେ କଳି ଝଗଡ଼ା ମାର୍‌ପିଟ୍‌ ଖୁଣ୍‌ ଡକାୟିତି ଲୁଟ୍‌ପାଟ୍‌କା ଯୁଗ ଏହି ଯୁଗ୍‌କୋ ବୋଲ୍‌ତା ? ସତ୍ୟ ନାହିଁ, ଦୟା ଧରମ୍‌ ଏସବ୍‌ କାହାଁ ଛଡ—ଭାଗାହେଁ ।

ଗୋପାଳଚନ୍ଦ୍ର ଭୂମ୍ୟାଧିପ—କାଳବିଳମ୍ବର ଅନାବଶ୍ୟକ । ଆଜି କେ୍ୟାଛଃ ଫିଦ୍ଦର ବିଚାର ହେବ । ଲୋକମାନେ ବିଚାର ଶୁଣିବାକୁ ବିଚାରାଳୟକୁ ଯାଉଅଛନ୍ତି । ମୁଁ ମଧ୍ୟ ଯାଏଁ; ଚାଲ ଭାଇ ଦାନଦୟାଳ ଯିବା ।

( ପ୍ରସ୍ଥାନ )

ରାମଧନ ପାଣ୍ଡେ—ହରିନାଥ ଭାଇ ! ଚାଲ ଅମ୍ଭେ ମଧ୍ୟ ଯିବା ।

( ପ୍ରସ୍ଥାନ )

ହରିଗୋପାଳ ସେଠ—ସବ୍‌ଶେ ଗିୟା, ହାମ୍ ଦେଖ୍‌ଣେ ଯାଇବୁଁ । ଅରେ ଲୋକ ତ ଧଉଡ଼ୁଛେ, ହାମ୍‌ବି ଯାଉଁ, ବିଚାରଠୁ ଦେଖ୍‌ଣା ହୋଗା ।

( ଦ୍ରୁତପଦେ ପ୍ରସ୍ଥାନ )

## ପଟ୍ଟପରିବର୍ତ୍ତନ



# ତୃତୀୟ ଦୃଶ୍ୟ

## ଦରବାରଲୟ

( ରାଜା ଦୁର୍ଜନ ସିଂହ ଦରବାରପତି ଆସନରେ ଉପବିଷ୍ଟ; ନିକଟରେ ଶରଣ ସିଂହ ମନ୍ତ୍ରୀ; ସେନାପତି ରତନ ସିଂହ ଉଭୟ ପାର୍ଶ୍ୱରେ ଶସ୍ତ୍ରହସ୍ତ ପ୍ରହରୀ ବେଷ୍ଟିତ; ଅନେକ ଭୂମ୍ୟାଧିକାରୀମାନେ ଦରବାରଲୟର କିଞ୍ଚିତ ଦୂରେ ଉପବେଶନ ଓ ସମ୍ମୁଖରେ ଜ୍ୟୋତି ସିଂହ ପ୍ରହରୀ ବେଷ୍ଟିତେ ଦଣ୍ଡାୟମାନ ) ।

ମଃ ଶରଣ ସିଂହ—ଏହି ସେ ଯୁବକ
ରାଜଦ୍ରୋହୀ ଅଟନ୍ତି
ରାଜ୍ୟ ଅନିଷ୍ଟ ସାଧନେ
କରିଅଛି ପ୍ରଜାବୃନ୍ଦ ନେତୃତ୍ୱ ଗ୍ରହଣ ।
ଶୁଣି ଅନୁଚରେ
ଜଣାଇଲେ ଆସି ମୋତେ
ତେଣୁ ତାକୁ ବନ୍ଦୀ କରି
ଶ୍ରୀଛାମୁରେ କଲି ଉପଗତ;
ଯଥାଦେଶ ହେବ
କରିବ ଏ ଅନୁଗତ ଦାସ
ସାଦରେ ଗ୍ରହଣ ।

(ଦଣ୍ଡାୟମାନ ହୋଇ) ସଭାସ୍ଥ ଦର୍ଶକବୃନ୍ଦ ।
ରାଜାଙ୍କ ଆଜ୍ଞାରେ ନିଶବ୍ଦେ ରହିଣ

ଶୁଣ ଆଦେଶ ବର୍ବର –
ପରିହର ମୁଖରବ ?

( ପ୍ରହରୀ ପ୍ରତି ) କର ଶୃଙ୍ଖଳା ଉନ୍ମୁକ୍ତ
କରାଅ ସମ୍ମୁଖରେ ବନ୍ଦୀ
ବିଚାରାର୍ଥେ ଉପଗତ ।
( ପ୍ରହରୀଗଣ ତଥା କରଣ )

ଦୁର୍ଜ୍ଜନ ସିଂହ—( ଜ୍ୟୋତିଃ ସିଂହ ପ୍ରତି )—
ଅପରାଧୀ ଯୁବକ !
କହ କିବା ନାମ ତବ ?

ଜ୍ୟୋତିଃ ସିଂହ—ଜ୍ୟୋତିଃ ସିଂହ ନାମ ମୋର—
ଉଦ୍ଭବ କ୍ଷତ୍ରିୟ କୁଳେ ।

ଦୁର୍ଜ୍ଜନ ସିଂହ—( କ୍ରୋଧଭରେ ) ଦୁର୍ଦ୍ଦାନ୍ତ ଯୁବକ !
ନାହିଁ ତଳେ ଭୟ ?
ପ୍ରଜାବୃନ୍ଦେ ବିଦ୍ରୋହ ଶିକ୍ଷକ ହୋଇ
ରାଜା କୃତଘ୍ନ ଅହିତେ—
ହୋଇଲ ଅଗ୍ରଣୀ
କହ ଉତ୍ତେଜିତ ବାଣୀ
କରୁଥିଲ ପ୍ରଜାଗଣେ ଉତ୍ସାହିତ ?
ଜାଣୁ ନା କି ରାଜଦ୍ରୋହୀଗଣେ—
ପରିଣାମେ କିବା ହୁଏ ?
ଯିଣ୍ଟସେ ମୁଁ ସତ୍ୟ କହ ।

କେୟାଛଃ ସିଂହ—ମହାରାଜ ! ସତ୍ୟ—

ଅବଗୃରେ ହେଉଅଛୁ
ପରଜା ପାଳନ,
ଦେଖି କାର ନ ହେବଟି
ମନ ଉଚ୍ଚଣ୍ଠିତ ?
ପ୍ରଜା କଷ୍ଟ ନିବାରଣେ
ନ ହେବ କେ କର୍ତ୍ତବ୍ୟ କାରଣେ
ଯଥାର୍ଥ ଭୂପଣେ ଅଗ୍ରସର ?
କୁଶାସନ ଫଳେ
କରୁଛନ୍ତି ହାହାକାର ସଦା ପ୍ରଜାଚୟେ ।
ଏ କି ଶାନ୍ତର ବଗୃର ?
ପ୍ରଜା ସର୍ବସ୍ୱହରଣ,
ରାଜ୍ୟେ ଯଥେଚ୍ଛାଶାସନ,
ପୂରାଇବ ରାଜା ସ୍ୱଭଣ୍ଡାର !
ଭ୍ରୂକ୍ଷେପ ନାହିଁ ରାଜାର—
ପ୍ରଜା ଦୁଃଖ ଶୋକେ !
ରାଜ୍ୟେ ଅନାବୃଷ୍ଟି, ଶସ୍ୟକ୍ଷୟେ
ପ୍ରଜାଚୟ ଭୀଷଣ ଦୁର୍ଭିକ୍ଷ ହେତୁ
କରୁଛନ୍ତି ସଦା ଉପବାସ;
ତଦୁପରି,
ଦ୍ୱିଗୁଣିତ କରପୀଡ଼ା କରି
ଅନାଦାୟେ କର୍ମଶୃଙ୍ଖଳଗଣ ହରି

ପ୍ରଜାଧନ, ପ୍ରହାରନ୍ତ ଏକ ବଣ୍ଟିକା !
ବୈଶଦ୍ୟରେ ପଣୋଲ୍ଲୀ
ଖେଳଇ ସତତ !
ପ୍ରଜା କଲେହେଁ ସୁହାସ
ନାହିଁ ଭଲେ ଦୟା ଟି ରଜାର !
ମହାରଜ । ଏ ଶାସନେ
ପ୍ରଜାକୁଳ ଶୋକ ଦୁଃଖେ—
ପରୋକ୍ଷେ କରନ୍ତ ଚର୍ଯ୍ୟା ।
ଅନ୍ୟାୟ ସେ କେତେ ବା ସହିବେ ?
କହୁ ରଜା ! ଦନୁ ଦନୁ
ଦୁଃଖ ସୀମା ବୃଦ୍ଧି ହେଲେ
ନ ସହିବେ ଅଉ,
ପ୍ରତ୍ୟକ୍ଷେ ଉଠିବ ଜଳ—
ବଦ୍ରୋହପାବକ । ସେଚ୍ଛାଗୃଷ୍ଟ—
ରଜଶକ୍ତି କରିବ ଦହନ—
ପ୍ରଜାଶକ୍ତି ବଳ—
ପ୍ରତ୍ୟକ୍ଷେ ଦେଖିବେ ସର୍ବେ ।
ଏହି ତ ମନ୍ତ୍ରଣା, ଏହା ବିନୁ—
ନାହିଁ ଅନ୍ୟ ଭବ;
ଏ କ ଦୋଷ ମହାରଜ ?
ଏ ସମୟେ ରଜାର କର୍ତ୍ତବ୍ୟ
ଛଡଣ ବ୍ୟସନ, ପ୍ରଜାଚର୍ଯ୍ୟେ—

ସୁଖୀ କର ଶାନ୍ତ ଦେବ ଦେଶେ;
ପରଜା ରଞ୍ଜନ ଅଟେ, ରାଜାର କର୍ତ୍ତବ୍ୟ
କିନ୍ତୁ । ଶତ୍ରୁ
ବୁଝିବା ଦୋଷରେ,
ହେଉ ହୁଏ ବିପରୀତ— ବନ୍ଧ ।

ଦୁର୍ଜ୍ଜନ ସିଂହ—( କ୍ରୋଧ ଜର୍ଜ୍ଜରିତ ) —
ଦାମ୍ଭିକ ବର୍ବର ! ରେ ପାଷଣ୍ଡ ।
ରାଜ୍ୟସାରୁ ଭୁଲ୍‌ବା—ବାକ୍ୟ
କରିଣ ରଚନ,
ଉପୁଜାଉ ମୋର ଶାନ୍ତ ରାଜ୍ୟେ—
ପ୍ରଜା ବିଦ୍ରୋହାଗ୍ନି !
କିନ୍ତୁ—ପରିଣାମ ଭୀଷଣ ତୋହର ।
ରାଜା, ମନ୍ତ୍ରୀ, ବଗ୍ଧରକ —
ନୁହନ୍ତି ରେ ଦୁର୍ମତି !
ମମ ସେନାପତି ମନ୍ତ୍ରୀ
ବୃହସ୍ପତି-ସ୍ରଷ୍ଟା ସମ ସୁଜ୍ଞାନୀ ପ୍ରବର,
ନୀତି ଗୁଣେ କରନ୍ତି ଶାସନ;
କେଉଁ ଗୁଣେ ଦୋଷୁ-ତାଙ୍କୁ—
ବାତୁଳ ପାମର ?
ମହାପାପୀ ତୁହି,
ରାଜା-ପ୍ରଜା ପିତା-ପୁତ୍ରେ—
ବିଦ୍ରୋହର ମୂଳ ତୁହି ।

( ମନ୍ତ୍ରୀପ୍ରତି ) ମନ୍ତ୍ରୀବର ! ଏ ଦୁର୍ଦ୍ଦାନ୍ତ ପାମର
କରେ ଶାନ୍ତରାଜ୍ୟେ ଅଶାନ୍ତି ଉଦ୍ଭବ,
ଶାସ୍ତି ଏହାର ଅତିବ ଭୀଷଣ ।
ଅତଏବ ସେନାପତେ !
ଏ ପାପୀକି ଘେନିଯାଅ ସମ୍ମୁଖ ଅମ୍ଭର—
ଆଜି ସର୍ବପ୍ରଜା ସମବେତ ସ୍ଥଳେ
ଦେଖୁଥିବେ ସର୍ବେ—

( ସହସା ଜଣେ କଞ୍ଚୁକୀଳର ପ୍ରବେଶ )

କଞ୍ଚୁଅଳ —( ବ୍ୟସ୍ତଭାବେ ଭାବେ ) ମହାରାଜ ! କାଳ ବିଳମ୍ବ କରି
ଅନାବଶ୍ୟକ । ମୁଁ ପରିଖା ପାଖରେ ପହରା ଦେବା ନିମନ୍ତେ
ଯାଇଥିଲି । ଶତ୍ରୁପକ୍ଷୀୟ ଅଶ୍ୱାରୋହ ସେନାଗଣ
ଦ୍ରୁତବେଗେ ଦୁର୍ଗାଭିମୁଖେ ଅଗ୍ରସର ହେଉ ଅଛନ୍ତି ।
( ନେପଥ୍ୟେ କଣ୍ଠ ଶ୍ୱର )

ହେଉଛି ମହାରାଜ ! ଶତ୍ରୁଗଣର ଜୟଧ୍ୱନି ଶୁଣନ୍ତୁ !

ନେପଥ୍ୟେ—"ଜୟ ମହାରାଜ ବିଜୟ ସିଂହଙ୍କ ଜୟ !"

ରତନ ସିଂହ—( ସତର୍କତେ ବାହାରକୁ ଯାଇ ପୁନଃ ପ୍ରବେଶ )
ମହାରାଜ !
ହେଲା ସର୍ବନାଶ !
ବିପକ୍ଷୀୟ ସେନା ନେଇ ଶତ୍ରୁଗଣ—
କରୁଛନ୍ତି ଦୁର୍ଗ ଅବରୋଧ ।

ଯାଏ ଦେଖା ଦୂରେ ବଜୟ ପତାକା—
ସୈନ୍ୟଗଣ ମୁଖରବ—          (କର୍ଣ୍ଣଡ଼େଇ)
ଓହୋ ! ଶୁଭେ,
ବଜୟର ଜୟରବ
ବହୁ ମୁଖରେ—
ଶୀଘ୍ର—ଶୀଘ୍ର ମହାରାଜ !
କରିବାକୁ ହେଉ ଦୁର୍ଗରକ୍ଷା ଚେଷ୍ଟା,
ଅନଥବଳମ୍ବେ ।

ଦୁର୍ଜ୍ଜନ ସିଂହ—( ଚମକି ପଡ଼ି ) ଓହୋ ! ବଜୟ ସିଂହର
ଜୟଧ୍ୱନି ରବ
ଉଠୁଲେ ଅଦୂରେ !
ପୂର୍ବ ଶତ୍ରୁ ବଜୟ ସିଂହର
ହେଲା ଆଗମନ—
ସସୈନ୍ୟରେ କରିବାକୁ
ଦୁର୍ଗ ଆକ୍ରମଣ
ଅତର୍କିତେ ।
ଏବେ କି କର୍ତ୍ତବ୍ୟ ?
( ଇତସ୍ତତ ଭାବେ )

( ରତନସିଂହର ପ୍ରତି ଆଦେଶ ଦେବା )

• ସେନାପତେ !
କି ଗୃହୁଁଛ ଏବେ ?

କର ପ୍ରବନ୍ଧକାର ଯେତେ ଶୀଘ୍ର ହୁଏ—
କର ସୈନ୍ୟ ସଂଗୃହୀତ
ଯୁଦ୍ଧକ୍ଷେତ୍ରେ କର ହେ ପ୍ରସ୍ଥାନ ।

(ପ୍ରସ୍ଥାନ)

( ମନ୍ତ୍ରୀ ପ୍ରତି ) ମନ୍ତ୍ରୀ !
କତିପୟ ସୈନ୍ୟ ନେଇ
କର ଅମ୍ଭ ଦୁର୍ଗ ରକ୍ଷା ଚେଷ୍ଟା
ଯେପ୍ରେ ଶତ୍ରୁଗଣ
ନ ପାରନ୍ତି କରି ଦୁର୍ଗରେ ପ୍ରବେଶ ।
ସ୍ୱୟଂ ଯାଇ ମୁହିଁ
କରିବି ଯେ ପରୀକ୍ଷା ଜନ୍ଲୁକ୍ତ—
ନିଜ ହସ୍ତେ ।

( ମନ୍ତ୍ରୀ ଦୁର୍ଜ୍ଜନ ସିଂହ ଦ୍ରୁତଗତିରେ ପ୍ରସ୍ଥାନ )

( ଜ୍ୟୋତିଃ ସିଂହ ମୁକ୍ତ ଅବସ୍ଥାରେ ଥିବାରୁ ଏ ସମସ୍ତ ଘଟଣା ଅବଲୋକନ କରି କେତେକ ସଙ୍ଗୀ ସହ "ଜୟ ମହାରାଜ ବିଜୟ ସିଂହଙ୍କ ଜୟ" କହି ଜନୈକ ସୈନିକକୁ ପଦାଘାତ ଓ ଅସ୍ତ୍ର ଗ୍ରହଣପୂର୍ବକ ଲମ୍ଫପ୍ରଦାନ କରି ଦ୍ରୁତଗତିରେ ପ୍ରସ୍ଥାନ । )

( ସସବ୍ୟସ୍ତରେ ସମସ୍ତଙ୍କ ପ୍ରସ୍ଥାନ )

## ପଟ୍ଟପରିବର୍ତ୍ତନ

# ଚତୁର୍ଥ ଦୃଶ୍ୟ

ପରିଖା

( ରତନ ସିଂହଙ୍କ ସୈନ୍ୟଗଣ ପରିଖା ପାର୍ଶ୍ୱରେ ଥାଇ ବିଜୟ ସିଂହଙ୍କ ସୈନ୍ୟ ପ୍ରତି ଅସ୍ତ୍ର ବର୍ଷଣ କରିବା । ବିଜୟ ସିଂହର ସୈନ୍ୟଗଣ ରଣଜିତ୍ ସିଂହ ଓ କୃପାଳ ସିଂହର ସୈନ୍ୟ ବାହିନୀ ଏବଂ ପରିଖା ପାରହେବା । ବିପକ୍ଷର ତୀର ଆସି ସୈନ୍ୟ ଅଙ୍ଗରେ ଭେଦ କରିବା ଏବଂ କେତେକ ସୈନ୍ୟ ଆହତ ହୋଇ ଜଳରେ ବୁଡି ଯିବା । )

ରାଜା ବିଜୟ ସିଂହ—( ସ୍ୱଗତ )—

ବିଷମ ବିପଦ ଆସି
ହେଲା ଉପସ୍ଥିତ,
କି ଉପାୟ କରିବି ବା ଏବେ ?
ସୈନ୍ୟଗଣ କରି
ଅତର୍କିତେ ଯୁଦ୍ଧ,
ହେଲେ ସମର ପ୍ରାଙ୍ଗଣେ ହତ ।
କେତେ ସୈନ୍ୟ ମୋର
ନ ପାରନ୍ତି ପରିଖା ଲଙ୍ଘନ କରି ।

( ପ୍ରକାଶ୍ୟେ ) ଆସ ଆସ ବୀର ପୁତ୍ରଗଣ !
କରେଁ ମୁଁ ଆହ୍ୱାନ,
ଧନୁର୍ଧାରୀ ବୀରବୃନ୍ଦ
ଚଢାଇଣ ଗୁଣ

କର ଲକ୍ଷ ସେହି ଦୁର୍ଜନ ସୈନ୍ୟଙ୍କୁ—
ଆଜ ତୀକ୍ଷ୍ଣ ଶରାଘାତ
ବାୟୁ ବେଗେ ପେଶ
ଶତ୍ରୁର ସେନାରେ ।
ଦିଅ ପ୍ରାଣ, ଦେଖା ଶକ୍ତି—
କର ବୀରେ ! ଜନନୀର
ମାନ ଉଦ୍ଧାରଣ ।

ସୈନ୍ୟଗଣ—"ଜୟ ଜୟ ଏକଲିଙ୍ଗ ହର
ମାତା କାଳିକା ଚରଣ !"

ବିଜୟ ସିଂହ—ବୀରଗଣ !
କର ପ୍ରାଣପଣେ ଶକ୍ତିର ପ୍ରୟୋଗ
ନାହିଁ ଚିନ୍ତା,
କର ଶତ୍ରୁ ସୈନ୍ୟେ ଅସ୍ତ୍ର ବରଷଣ
ଅଧୀନତା ନକର ସ୍ୱୀକାର;
ପରାଧୀନ ଅଟେ ମୃତ୍ୟୁର ସମାନ ।
ବୀରବୃନ୍ଦ !
କର ସିଂହନାଦ
ମହୋତ୍ସାହେ ଶତ୍ରୁପକ୍ଷେ
କର ଆକ୍ରମଣ ।
ବୁଭୁକ୍ଷିତ ମୃଗେନ୍ଦ୍ର-ଯେସନ —
ଦେଖି ମୃଗ—

ଦଏ କି ସେ କେବେ ଛାଡ ?
ଛାଡ ଭୟ,
ଧର ଦମ୍ଭ,
ଦୃଢ଼ମୁଷ୍ଟି କର ଅସ୍ତ୍ର ବରଷଣ
ଦେଖାଇଣ ବାହୁବଳ
ରଖ ଟେକ ବୀରର ମହିମା,
ପରାଜୟ କର ଶତ୍ରୁ ।
ନ ବାହୁଡ଼ ସ୍ୱଗୃହକୁ—
ଲାଙ୍ଗୁଡ ସଙ୍କୋଚ ଶ୍ୱାନ
ପଳାଏ ଯେପରି ।
ମାଳ ଅର୍ଜ୍ଜିବାରେ
ଅର୍ଜ୍ଜିର ଯା ସାରଧର୍ମ ।
ଫଳୁ ଯା ଫଳିବ ଆମ୍ଭର କର୍ମରେ
ରହ ଧର୍ମରକ୍ଷା କରି;
"ମନ୍ତ୍ରର ସାଧନ ଅବା ଶରୀର ପତନ"
ସର୍ବଦା ଆଦର୍ଶ କର—
ଏହି—ବୀରୋଚିତ ବାଣୀ ।

(ଦ୍ରୁତବେଗେ ଅଗ୍ରସର ହୋଇ ପ୍ରସ୍ଥାନ)
( ଗୃହିଣୀ ପ୍ରବେଶ )

—ଗୀତ—

ଶୃଗାଳ ବୀର ଦର୍ପେ ମୃଗେନ୍ଦ୍ର ସନ୍ତାନ
କର ଯଶୋଲକ୍ଷ୍ମୀର ମାନ ଉଦ୍ଧାରଣ ।

ମାତୃରୂପୀ ମାତା ଜନମଭୂମିର
ଉଦ୍ଧରିବ ଯେଉଁ ସୁପୁତ୍ର ମାତାର ।
ନାହିଁ ଚିନ୍ତା ହେଲେ ସମରେ ସଂହାର
ଜୟ ପରାଜୟ ଷନ୍ଦିଗ୍ଧ ବେଭାର ।
ଗାଅ ଉଚ୍ଚ ସ୍ୱରେ ବୀରେନ୍ଦ୍ର କୁମାର
ଜୟ ମହାରାଜ ବିଜୟ ସିଂହର ।
ଗାଅ ସର୍ବେ ମିଳି ଦେଇ କରତାଳି
ଜୟ ସେନାପତି ଜ୍ୟୋତିଃ ସିଂହଙ୍କର ।

( ପ୍ରସ୍ଥାନ )

## ପଟ୍ଟପରିବର୍ତ୍ତନ



# ପଞ୍ଚମ ଦୃଶ୍ୟ

ଯୁଦ୍ଧ କ୍ଷେତ୍ରର ଅନ୍ୟପାର୍ଶ୍ୱ

( ଜ୍ୟୋତିଃ ସିଂହ ଓ ନାଗରିକଗଣ ଓ ପ୍ରଜାଗଣ

ସୈନ୍ୟବେଶେ ଦଣ୍ଡାୟମାନ )

ଜ୍ୟୋତିଃ ସିଂହ—ପ୍ରିୟ ଭ୍ରାତୃଗଣ !

ମହୋଦାର ମାତୃଭକ୍ତ ବୀରଚୟ !

ଦେଖି ଭବ,

ଅଜି ଅମ୍ଭ କ ଆନନ୍ଦ ଦନ ।

ଥିଲେ ବୃଦ୍ଧ ନରଦେବ

କରୁଥିଲେ ପରଜା ପାଳନ ପୁତ୍ରନିର୍ବେ ।

ସେହ ନରଦେବ ହୋଇଥିଲେ ବିତାଡ଼ିତ;

କନ୍ତୁ ହେଲ ଯହୁଁ—

ଯଶୋଲକ୍ଷ୍ମୀର ଭାଗ୍ୟୋଦୟ

ପାଇଲୁ ସେ ପିତୃସମ

ଆଦର୍ଶ ନରେଶ ।

ନବୀନ ନୃପତ୍ତ ପ୍ରଭୁଦ୍ରୋହୀ

ଦେଶଦ୍ରୋହୀ ସେ ଦୁର୍ଜନ ସିଂହ

କରେ ଯେ ନୀଷ୍ଠୁର କର୍ମ

ହର ପ୍ରଜାଙ୍କ ସର୍ବସ୍ୱ

ଦେଇ ବନାଦୋଷେ ଦଣ୍ଡ ।

ଭୁଲିଲ କି ବୀରଗଣ !
ବେଗେ ତେଜ୍ୟା କର
ମଦନ, ଆଳସ୍ୟ, ଈର୍ଷା
କ୍ଷତ୍ରିୟର ଯା ପ୍ରିୟ ଧର୍ମ
ପାଳ ହେ ସତ୍ୱରେ—
ପ୍ରମାଣିତ କର ପ୍ରତିପଦେ,
ଧନୁ, ଅସି, ଗଦା ଅସ୍ତ୍ରାଳନେ
କର୍କଶ ଯାହାଙ୍କ ହସ୍ତ
ତାଙ୍କର ସନ୍ତତି ବୋଲି ହୁଅ ପରଶତ ।
ରାଜା ବିଜୟ ନରେଶଙ୍କ
ଜୟ ଅଶେ କର ତାଙ୍କ ସର୍ବେ ଜୟଗାନ ।

ସୈନ୍ୟଗଣ—"ଜୟ ଜୟ ମହାରାଜ ବିଜୟଙ୍କ ଜୟ" ।

ଜ୍ୟୋତିଃ ସିଂହ—ହୁଅ ଅଗ୍ରସର ବୀରେ !
ହୁଅ ଅଗ୍ରସର ।
କର ଜୀବନ ଉତ୍ସର୍ଗ,
ଜୟ ଗାନକରି ମାତା ଚଣ୍ଡୀର ପଦ୍ମରେ
ମହୋତ୍ସାହେ, ବୀରଙ୍କାକେ ପୂରୁ ରଣ ସ୍ଥଳୀ,
ଉଚ୍ଛୁଳ ସେ ରବ ଉଠୁ
ଦିବ, ଭୁବ, ଅନ୍ତରୀକ୍ଷେ ।

ସୈନ୍ୟଗଣ—"ଜୟ ଜୟ ଏକଲିଙ୍ଗ, ହରହର ଏକଲିଙ୍ଗ" ।

ଜ୍ୟୋତିଃ ସିଂହର—ସଂଗଠିତ ସୈନ୍ୟଗଣ—
ହେ—ବୀର କୁମାର !

ଯେନ ତେନ ନିବେଦନ ଆମ୍ଭମାନଙ୍କର ।
ଦେଖି ତବ ବୀରଶକ୍ତି
ହେଲୁ ସର୍ବେ ବଶୀଭୂତ,
ଏ ବାଲ୍ୟ ବୟସେ—ବାଳବୀର—
ଅଭିମନ୍ୟୁ ପରି
ହେଲୁ ତବ ଆଜ୍ଞାଧୀନ ।
କରୁ କରୁ ସର୍ବେ
ବିନୟରେ ଏକଇ ପ୍ରାର୍ଥନା,
କର ତାହା ଅଚିରେ ପୂରଣ ।

ଜ୍ୟୋତଃ ସିଂହ—କି ପ୍ରାର୍ଥନା କହ;
ଯଦି ଥାଏ ମୋ ଶକତି
କରିପାରେଁ ତେବେ
ତୁମ୍ଭଙ୍କୁ ପ୍ରଦାନ ତାହା ।
ହେଲେ ପ୍ରୟୋଜନ
ଶତ ଜନ ଉପକାରେ
ଉତ୍ସର୍ଗ ମୁଁ କରିପାରେଁ ଜୀବନ ମୋହର ।

ସୈନ୍ୟବୃନ୍ଦ—ବୀରୋତ୍ତମ ଯୁବକ ପ୍ରବର !
ହେଲୁଁ ଅତୀବ ଆନନ୍ଦ ସର୍ବେ
ଶୁଣି କର୍ଣ୍ଣେ
ତବ ଶିକ୍ଷାପ୍ରଦ ବାକ୍ୟ ।
ଏଣୁ କରୁଛୁଁ ପ୍ରାର୍ଥନା,

ହୁଅ ସୈନ୍ୟ ସେନାପତି ।
କରନ୍ତୁ ଆଦେଶ
ଯଥା ସ୍ଥାନେ କରିବାକୁ ଅଭିଯାନ ।

ଜ୍ୟୋତିଃ ସିଂହ—ବୀର ବୃନ୍ଦ !
ଯଦି କର ସ୍ନେହେ ଅରପଣ
ସେନା ଚାଳନାର ଭାର ମୋହ ଶିରେ
ସର୍ବ ସୁସମ୍ମତେ—ତବ ବାକ୍ୟ
କଲି ସାଦରେ ଗ୍ରହଣ;
ନ ସହେ ବିଳମ୍ବ ଆଉ ।

( ରତନ ସିଂହର ସୈନ୍ୟ-ସମବେତ ସ୍ଥଳକୁ ସମସ୍ତଙ୍କ ପ୍ରସ୍ଥାନ )
( ଚାରଣୀ ଗୀତ ଗାଉ ଗାଉ ପ୍ରବେଶ )

—ଗୀତ—

ଶଙ୍ଖ ବଜାଇ ଶିଙ୍ଗା ବଜାଇ
ଜାଗ ଜାଗ ରଣଯାତ୍ରୀ !
(ଗାଅ) ଜୟ ଜୟ ମା ଜନ୍ମଭୂମି—
ବୀର-ଜନମ-ଦାତ୍ରୀ ।
ଭୀମ ଗରବେ ଶର ଗୌରବେ
ଯଶୋଲକ୍ଷ୍ମୀର ଗାଏ ଅତୀତ ଗୀତି
ଜାଗ ରେ ଜାଗ ରେ
ବୀର ସନ୍ତାନ
ରଣ ରଙ୍ଗନେ ବନ୍ଧ ପାଗ !

ଶତ୍ରୁ ଶୋଣିତେ ଭସାଅ ମେଦନୀ
ଉଚ୍ଛ୍ୱସି ଉଠୁ ପ୍ରଳୟ ଗୀତ ।
(ଗାଅ) ବିଜୟ ଦର୍ପେ
ନାହୁ ମାଂ, ଜୟ
ରଣ-ରଙ୍ଗିଣୀ ଜଗଦ୍ଧାତ୍ରୀ ।

( ଗାଇ ଗାଇ ପ୍ରସ୍ଥାନ )

**ପଟ୍ଟପରିବର୍ତ୍ତନ**



## ଷଷ୍ଠ ଦୃଶ୍ୟ

ରଣକ୍ଷେତ୍ରର ଅପର ପାର୍ଶ୍ୱ

( ଜ୍ୟୋତିଃ ସିଂହ ରଣକ୍ଷେତ୍ରରେ ସସୈନ୍ୟେ ଉପସ୍ଥିତ,
ରତନ ସିଂହର ସୈନ୍ୟ ପ୍ରତି ତୀର ଚଳାଇବା )

ରତନ ସିଂହ—କ୍ଷାନ୍ତ ହୁଅ ସୈନ୍ୟଗଣ !
କର ଅସ୍ତ୍ର ସମ୍ବରଣ ।

ସୈନ୍ୟଗଣ—( ଅସ୍ତ୍ର ସମ୍ବରଣ କରିବା )

ଜ୍ୟୋତିଃ ସିଂହ—( ରତନ ସିଂହ ପ୍ରତି )—
ଦେଖି ତବ ଅସ୍ତ୍ର ସମ୍ବରଣ
ହେଲି ଅତୀବ ଆନନ୍ଦ,
ଆସ, କର ଦେଶ କାର୍ଯ୍ୟ,
ପାପୀ ନିଷ୍କାସନ କାର୍ଯ୍ୟେ
ହୁଅ ଅଗ୍ରସର ।

ରତନ ସିଂହ—ହେଲି ତବ ବାକ୍ୟେ ସୁସମ୍ମତ
କି ଆଦେଶ କର, କରିବି ପାଳନ ।

( ବିଜୟ ସିଂହ, ରଣଜିତ୍ ସିଂହ, କୃପାଳ ସିଂହ ସସୈନ୍ୟେ
ସମରଭୂମିରେ ଉପସ୍ଥିତ )

ବିଜୟ ସିଂହ—ଦେଖ ବୀରବୃନ୍ଦ !
ବିପକ୍ଷର ସେନା-
କି କାରଣେ କରୁଛନ୍ତି

ଅସ୍ତ୍ର ସମ୍ବରଣ—
ଏ କି ? ହେଲେ ସର୍ବେ ପ୍ରଭୁଦ୍ରୋହୀ !

ସେ:ରତନ ସିଂହ—( କରଯୋଡ଼େ ) ମହାରାଜ !
ଲଭି ଛାମୁଙ୍କର ସାଧୁ ବ୍ୟବହାର
ତୁଷ୍ଟ ସଦା ଏ ପ୍ରଜାମଣ୍ଡଳୀ ।
ଝୁରୁଛନ୍ତି ଅଦ୍ୟାବଧି ସେହି
ସୁଶାସନ,
ଆଜି ବୀରବୃନ୍ଦ
ସେନାଗଣେ ଛାମୁ ଦରଶନ ପାଇ
ହୁଅନ୍ତି ଆନନ୍ଦ,
ପୁନ କି ପାଇଲା ଚିରତ୍ୟାଗୀ ଥିବା—
ପିତୃପଦ ।
ଦେବ !
ଭକ୍ତିଭରେ ଉଚ୍ଛୁଳେ ହୃଦୟ,
କରନ୍ତୁ ଗ୍ରହଣ ଦେବ
ସମାଭିବାଦନ ! ( ଅଭିବାଦନ କରିବା )

ବିଜୟ ସିଂହ—ହେଉ ହେ ମଙ୍ଗଳ !
ହୁଅ ତେବେ ସର୍ବେ ଅଗ୍ରସର ।

ରତନ ସିଂହ—ଶୃଙ୍ଖଳ ସୈନ୍ୟଗଣ !
ନର ପଶୁ ! ସେ ନର ପିଶାଚେ—
ପୁତ୍ରରୂପେ ପାଇ
ଯଶୋଲକ୍ଷ୍ମୀର ମାତା
ପାଉଅଛି ମହା ମନସ୍ତାପ ।

ତେଣୁ କରିବାକୁ ହେବ
ମାତାର ମାନସ ଶାନ୍ତ ।
କରିବା ରଞ୍ଜିତ ଏବେ—
ଶତ୍ରୁରକ୍ତେ ମାତୃପଦ ।
ଅୟି ବୀରେ !
ଦେଶଦ୍ରୋହୀ-ମସ୍ତକଚ୍ଛେଦନ ବ୍ରତେ—
ହେବା ଅଗ୍ରସର ।

ଜ୍ୟୋତିଃ ସିଂହ—( ବିଜୟ ସିଂହଙ୍କୁ ଅଭିବାଦନ କରି ଖାପମଧ୍ୟରେ ଅସ୍ତ୍ର-ଝଙ୍କାର କରି ସୈନ୍ୟଗଣଙ୍କୁ କହିବା )
ଚାଲ କର ଦୃଢ଼ଚିତ୍ତ
କ୍ଷୁଧାତୁର ଜୀର୍ଣ୍ଣ ଶୀର୍ଣ୍ଣ—
ପ୍ରଜାଗଣ !
ନିଅ ପ୍ରତିଶୋଧ
ମନେ ଭାବ ନିରବଧି—
ପାଷଣ୍ଡ ଶାସନ ।
କରି ଦୁର୍ଗ ଅବରୋଧ
କର ଶତ୍ରୁର ସଂହାର,
ଉତ୍ସାହିତେ କର ଜୟଗାନ
"ମହାରାଜ ବିଜୟ ସିଂହଙ୍କ ଜୟ" ।

ସୈନ୍ୟଗଣ—"ଜୟ ଜୟ ମହାରାଜ ବିଜୟ ସିଂହଙ୍କ ଜୟ !"

**ଯବନିକା**

# ଚତୁର୍ଥ ଅଙ୍କ

## ପ୍ରଥମ ଦୃଶ୍ୟ

ପ୍ରାଚୀର

( ଦୁର୍ଜ୍ଜନ ସିଂହ, ମନ୍ତ୍ରୀ ଶରଣସିଂହ ଦୁର୍ଗ ପ୍ରାଚୀର ନିକଟରେ ଦଣ୍ଡାୟମାନ )

( ସସବ୍ୟସ୍ତେ ଦୂତର ପ୍ରବେଶ ଓ ଅଭିବାଦନ )

ଦୁର୍ଜ୍ଜନ ସିଂହ—( ଉଦ୍‌ବେଗ ଭରେ )
କହ ରେ କହ ରେ ଦୂତ !
ରଣସମାଚାର,
କି ଘଟିଲା, କି ହେଲା କି ହେଲା ?
କହି ସେନାପତି ଜୟସମାଚାର
କର ତୁଷ୍ଟ ଅତୁଳ ପରାଣ ମମ ।

ଦୂତ— ମହାରାଜ ! ହାୟ ! ହାୟ !
କି ବର୍ଣ୍ଣିବ ବିଷମ ବିପଦ କାଳ
ହେଲା ଉପସ୍ଥିତ ।
ସୈନ୍ୟ ଦେନି ବିଜୟ ନରେଶ
କଲା ଅତର୍କିତେ ଦୁର୍ଗ ଆକ୍ରମଣ;
ମହାବାହୁ ! ଆଉ ନାହିଁ—
ଆଉ ନାହିଁ ରକ୍ଷା !

ଯେଉଁ କ୍ୟୋଡଃ ସିଂହ—
ହୋଇଥିଲ ବନ୍ଦୀ,
ଦେଖି ସୁଯୋଗ ସମୟ—
ଉଠିଲା ସେ ବୀରଡ଼ାକେ,
ଯଥା ସୁପ୍ତସିଂହ—
କେଶର ଫୁଲାଇ ଉଠେ,
ଅମିଷରେ ଲଲାୟୀତ ମୃଗେନ୍ଦ୍ର ପସ୍ୱୟେ ।
ପ୍ରଜାଗଣେ ହୋଇ ସମ୍ମିଳତ—
କଲେ ତବ ଦୁର୍ଗ ଅକ୍ରମଣ ।
ରଣସ୍ଥଳେ ନିର୍ଧୂମ ଅନଳ ସମ
ଦଣେ କ୍ୟୋଡଃ ସିଂହ କ୍ୟୋତ ।
ବଜ୍ରପରିକରେ
କମ୍ପାଇଣ ରଣସ୍ଥଳ—
କମ୍ପାଇଣ ଅକାଶ ପାତାଳ
ବିଦ୍ରୋହୀ ପ୍ରଜାଏ,
ପ୍ରଳୟ ଝଂକାର ସମ
କରୁଛନ୍ତି ଭୈରବ ହୁଙ୍କାର—
ବୀର ରବେ—
ଅଜ ପଦାନୁସରଣ ।
ମୋହର ହୁଅଇ ମନେ
କିବା ସ୍ୱୟଂ ରଣଦେବ
ଯୁଦ୍ଧାଙ୍ଗନେ ମୂର୍ତ୍ତିମନ୍ତେ

ହେଲେ ଅବର୍ଦ୍ଧ ।
ହାୟ ! ହାୟ !
କି କହିବ ଦୁଃସହ ସମ୍ବାଦ ?
ଛମୁଙ୍କ ବାହିନୀ
ସେନାପତି ରତନ ସିଂହର ସଙ୍ଗେ
ଅତତାୟୀ ବିଶ୍ୱାସ ଘାତକେ,
ତ୍ୟାଗ କରି ଛମୁଙ୍କ ଆଶ୍ରୟ
ବନ୍ଦିଲେ ଶତ୍ରୁର ପଦ
ଲଜ୍ଜା ତେଜି ମନୁ ।
କରି ସର୍ବେ ପରୀଖା ଲଙ୍ଘନ
ଦୁର୍ଗଅବରୋଧ ପାଇଁ
ହେଲେଣି ନିକଟ—
ଏବେ ନାହିଁ ବିଳମ୍ବ
କରିବାକୁ ହେଉ ଦେବ
ଆତ୍ମରକ୍ଷା ଚେଷ୍ଟା—
ଶତ୍ରୁମୟ ହେଲା ଏ ଭୁବନ ।
ନ ଦେଖେ ଉପାୟ ଦେଖି
ଅଇଲି ପଳାଇ,
ଶ୍ରୀଛମୁରେ ଜଣାଇବା ଆଶେ;
ଯଥା କର୍ତ୍ତବ୍ୟ ମୋହର,
କ୍ଷମା ହେଉ ଅପରାଧ ମମ ।
ଦୁର୍ଜ୍ଜନ ସିଂହ—ଦୂତବର !
ଉପଯୁକ୍ତ ପ୍ରଭୁଭକ୍ତି ଦେଖାଇଛ—
ତୁମ୍ଭେ, କରିଅଛ

ବହୁତ କର୍ତ୍ତବ୍ୟ,
ଯାଅ ଦୂତ ଯଥାସ୍ଥାନେ ତବ;
ଯାଏଁ ମୁହିଁ କର୍ତ୍ତବ୍ୟ ସାଧନେ
କରିବି ତା ଆୟୋଜନ ଏବେ ।

ଦୂତ—ଆଜ୍ଞା ମହାରାଜ !

(ଅଭିବାଦନ କରି ପ୍ରସ୍ଥାନ)

ଦୁର୍ଜ୍ଜନ ସିଂହ—(ସ୍ୱଗତ) ହାୟ ! ହାୟ !

ଆଜି କି ମୋହର ଏହି
ଦୁର୍ଭାଗ୍ୟ ସମୟ !
ଦେଖି ମୋ ଆପଦ କାଳ
ଦେଲେ ଛାଡ଼ି ଯୁଦ୍ଧ ।
ପ୍ରଭୁଦ୍ରୋହୀ ଅବିଶ୍ୱାସୀ ସୈନ୍ୟଗଣେ
କଲେ ହେୟ ପ୍ରଭୁର ଆଦେଶ !
ଶତ୍ରୁପଦେ ଝଟିଲେ ସେ ଯାଇ
କରି ଅସ୍ତ୍ର ତ୍ୟାଗ—
ଏବେ କି କର୍ତ୍ତବ୍ୟ ମମ ?

ହାୟ ରେ ପାଷଣ୍ଡେ
ପ୍ରଭୁଦ୍ରୋହୀ ଫଳେ
ହେବ ସର୍ବେ ଅପରାଧୀ—
ଈଶ୍ୱର ଚରଣେ !

କି କରିବି—କାହିଁ ଯିବି—
କି ଉପାୟ କରିବି ସାଧନା ?
ଆହା ! ନ ହେଲା କାମନା ସିଦ୍ଧି

ଥିଲା ଯେଉଁ ଆଶା—
କାଳ ମୋର ଏବେ ଉପସ୍ଥିତ
ଯେଉଁ ଜ୍ୟୋସ୍ନାରୂପ ମଧୁପାନେ
ହୋଇ ଆଶାଯ୍ୱିତ
କରିଥିଲି ସବୁ ଦୃଶ୍ୟ ନାଟକାଭିନୟ ।
ଯେଉଁ ଅଙ୍କର ସମାପ୍ତି—
ହେଲା ମୋର ଯବନିକା ଭାଗ୍ୟର ପତନ ।
ଜ୍ୟୋସ୍ନାରୂପ ହେଲା ମୋର କାଳ—
ତାହାପାଇଁ ହେଲା ମୋର
ଭାଗ୍ୟରବି ଚିର ଅସ୍ତମିତ;
ଯେନ ଯିବ ଅମୂଲ୍ୟ ରତନ ରାଜକୋଷୁଁ ।
ଯେଉଁଥିରେ ରକ୍ଷା ହୁଏ ପ୍ରାଣ—
ବହୁତ ଅଟଳ ଅଗ୍ରେ କରିବ ମୁଁ
ତହିଁର ଉପାୟ ।
ବିଳମ୍ବରେ କାର୍ଯ୍ୟନାଶ ହୋଇ
ଶେଷେ ହେବ ମନେ ଅନୁତାପ ।
(ଇତସ୍ତତ ଭ୍ରମେ)

(ମନ୍ତ୍ରୀପ୍ରତି)—କି ଉପାୟ ମନ୍ତ୍ରୀବର !
ହେଲା ସବୁ ଆଶା ବିଦୂରିତ
ଏ ମହା ଆପଦ କାଳେ
କି କରି ବହୁତ ?

ଶରଣ ସିଂହ—ମହାରାଜ ।
ବର୍ତ୍ତମାନ ଉପାୟସାଧନେ

ନାହିଁ ଅଭ କାଳ
ଥିଲେ ଏ ଶରୀର
ପରେ କରିବା ବିଜୟ ଚେଷ୍ଟା—
ରାଜ୍ୟଧନେ ବଳାଇ ମାନସ ।
ମମ ଅନ୍ତର ମଧ୍ୟରେ-
ଦିଶେ ଏକଇ ଉପାୟ
ରାଜକୋଷୁଁ ଘେନ ବହୁ ମୂଲ୍ୟ
ରତନ ନିଚୟ;
ଗୁପ୍ତଦ୍ୱାର ଦେଇ ଶୀଘ୍ର
କରିବାକୁ ହେବ ପଳାୟନ ।

ଦୁର୍ଜ୍ଜନ ସିଂହ—ଯାଅ ତୁରି,
ବିଶ୍ୱାସି ଭୃତ୍ୟଙ୍କୁ
ଗୁପ୍ତଦ୍ୱାରେ ରଖି କରି ସୁସଜ୍ଜିତ
ବେଗଗାମୀ ତୁରଙ୍ଗମ ଦ୍ୱୟ ।
ଆସିବ ପାଶକୁ ମୋର
ଅନତି ବିଳମ୍ବେ ।

ଶ: ମନ୍ତ୍ରୀ—ଯଥାଦେଶ ।

( କକ୍ଷ ପ୍ରସ୍ଥାନ )

ଦୁର୍ଜ୍ଜନ ସିଂହ—(ସ୍ୱଗତ) ଯାଏଁ ମୁହିଁ,
ଘେନିଆସେ ଶୀଘ୍ର
କରିବାକୁ ରାଜକୋଷ ଦ୍ୱାର ଉନ୍ମୋଚନ ।

( କକ୍ଷ ପ୍ରସ୍ଥାନ )

**ପଟ୍ଟପରିବର୍ତ୍ତନ**

# ଦ୍ୱିତୀୟ ଦୃଶ୍ୟ

ରାଜ ଅନ୍ତଃପୁର କୋଷାଗାର

( ରାଜା ଦୁର୍ଜ୍ଜନ ସିଂହ କୋଷାଗାରରେ ରତ୍ନରାଶି ଆହରଣ
କରି ରଖୁଥିବା ସମୟେ ମନ୍ତ୍ରୀ ଶରଣ ସିଂହର ପ୍ରବେଶ,
ମନ୍ତ୍ରୀକୁ ରତ୍ନରାଶି ବୁକୁଳା ଧରାଇ ଦେଇ )

ଦୁର୍ଜ୍ଜନ ସିଂହ—ଯାଅ ମନ୍ତ୍ରୀବର !
ନେଇ ସଙ୍ଗେ ରତ୍ନରାଶି
ନ କରି ଅପେକ୍ଷା ମୋହରି;
ଯାଅ ଗୁପ୍ତ ସୁଡ଼ଙ୍ଗ ମାର୍ଗରେ—
ପଛେ ପଛେ ଯାଉଅଛି ମୁହିଁ ।

ଶରଣ ସିଂହ—ଯଥାଦେଶ ମହାରାଜ !
କିନ୍ତୁ ଏ ଅଟେ ବିପଦ ସ୍ଥାନ—
ଦେବ ! ବିଳମ୍ବେ ହେବଟି ସର୍ବନାଶ ।

( କନ୍ଧ ରତ୍ନ ବୁକୁଳା ଧରି ପ୍ରସ୍ଥାନ )

( ଦୁର୍ଜ୍ଜନ ସିଂହ କୋଷାଗାରରୁ ବାହାରି ଅଗ୍ରସର ହେଉଥିବା ବେଳେ
ସହସା ଜ୍ୟୋତ୍ସ୍ନାବାଈ ପ୍ରବେଶ ଓ ସଚକିତେ ଦଣ୍ଡାୟମାନ । )

ଦୁର୍ଜ୍ଜନ ସିଂହ—( ସ୍ତମ୍ଭିତ ଭାବେ ସଚକିତେ ଜ୍ୟୋତ୍ସ୍ନାକୁ ଦେଖି )
( ସ୍ୱଗତ )—ଏ କିଏ ?
ଅମୂଲ୍ୟ ରତନ !
ନାହିଁ ଯାର ରୂପର ଉପମା,

ଯା'ର ଜ୍ୟୋତି ସଙ୍ଗେ
ତୁଚ୍ଛ ଏ—
ସାମାନ୍ୟ ରତନର ଜ୍ୟୋତି ।
ଏ ଅପୂର୍ବ ଅବଳାର ରୂପ,
ହରିଛି ମାନସ ମୋର;
ଏ ଦୁର୍ଲ୍ଲଭ ରତ୍ନ ଛଡ଼ି
ତୁଚ୍ଛ ଦ୍ରବ୍ୟେ ବଳାଉଛି ମତି !

ଦେଖେ ଯାହା ନେତ୍ରେ,
କେଉଁ ପ୍ରାଣେ ଯିବ ଛାଡ଼ି
ଅମୂଲ୍ୟ ହେମାଙ୍ଗୀ ?
ଗଲେ ତେଜି ପ୍ରାପ୍ତ ନିଧି,
ଅପ୍ରାପ୍ତ ପ୍ରାପ୍ତି ଆଶା—
ରଖିଥିବ ମନେ ?
ଅଲଭ୍ୟ ପ୍ରାପ୍ତ ନିଧି
ଛାଡ଼ି ପଳାଇବା ଅଟେ
କାପୁରୁଷ କାର୍ଯ୍ୟ ।
ଯାହା ପ୍ରତିଆଶେ ଏତେ ଦ୍ୱନ୍ଦ
ଏତିକ ବନ୍ଧ୍ୟାଚ
କରିଥିଲି ସଂଘଟନ—
କିପରି ମୁଁ ଯିବି ତେଜି ତାରେ ?
( ପ୍ରକାଶ୍ୟେ )

( କାତରସ୍ୱରେ ବନୀତ ସ୍ୱରେ )
ଜ୍ୟୋତ୍ସ୍ନା !
ମୋର ମାନସହାରିଣୀ ଜ୍ୟୋତ୍ସ୍ନା !
ଦେଖ ଆସି
ହେଲା ମୋର ତବ ପେନ ସର୍ବନାଶ ।
ହସ୍ତଚ୍ୟୁତ ଏହି ଦୁର୍ଗ—
ଆଜ ନାହିଁ ଜୟ ଆଶା ମୋର ।
ସ୍ନେହର ପ୍ରତିମା ! ପ୍ରାଣୁ ବଳି—
ସ୍ନେହ କରେ ମୁହିଁ;
ତୋର ପ୍ରତି କରି ଆଶା
ପାଉଛି ମୁଁ ଅସୀମ ଯନ୍ତ୍ରଣା ।
ତେବେ ମଧ୍ୟ ନାହିଁ ଶଙ୍କା,
ନାହିଁ ଯେ ବିଷାଦ ମନେ
ଥିବାରୁ ଭରଷା—
ତବ ପ୍ରେମ ଲାଭ ଆଶା ମନେ ଜାଗ୍ରତେ
ପ୍ରଜାଚୟ, ପାଇ ମୋର
କଠୋର ଶାସନ
ହେଲେଣି ବିରକ୍ତ ଆଜ —
କଲେଣି ବିଦ୍ରୋହ,
ପରିଣାମେ ହେଲା ଏ ଦୁର୍ଗତି !
ଏ ମୋ ଦୁର୍ଗତିର ହେତୁ
ଅଟନ୍ତି ପିଅରି ତୋର ।

ପାଇ ଜ୍ୟୋତ୍ସ୍ନାଃ ହୃଦର ଉତ୍ସାହ
ପ୍ରଜାଗଣ ମିଶି କଲେ ମୋତେ
ଦୁର୍ଗ ବହିଷ୍କୃତ;
ଆଜି ମଧ୍ୟାହ୍ନ କାଳରେ
ଉଦ୍ଭୟ ବାହିନୀ
କରି ଆକ୍ରମଣ ଦୁର୍ଗ
ନେଲେ ମୋର ରାଜ୍ୟ ସମ୍ପଦ ହରି ।
ତେଣୁ ବାତାହତ ବୃକ୍ଷସମ
ହେଉଛି ଅଥୟ ।
ଦେଖ ଦୁର୍ଦ୍ଧର୍ଷ ବାତ୍ୟାସମ
ବୁଲେ ମୋ ମାନସ
ଚିରଦିନ ଆଶା ହେଲା ଚୂର୍ଣ୍ଣ ।
କିନ୍ତୁ ତୋର ରୂପର ପିପାସା
ନ ଛୁଟେ ମାନସୁଁ ମୋର
କର ଗୋ ପୂରଣ ତୋର
ପ୍ରେମନୀର ଦାନେ ।
ଜ୍ୟୋତ୍ସ୍ନା ! ପ୍ରାଣର ଜ୍ୟୋତ୍ସ୍ନା !
(ପ୍ରେମପୂର୍ଣ୍ଣ ନେତ୍ରେ ଚାହିଁବା)

ଜ୍ୟୋତ୍ସ୍ନା ବାଈ—ନିର୍ବୋଧ !
ଅନୁତପ୍ତ ଯୁବକ !
ଫଳ ଲଭେ କରେ କର୍ମ
ଅଜ୍ଞାନ ମାନବ ।

କାନ୍ତୁ !
ବଗୁଡ଼ିଣ ଫଳ ଦଇଣ୍ଡ ମଦ୍ଦେଣ ।
ମୋତେ ଅବା କହୁ ନାହିଁ କେତେ—
ନଷ୍ଟ ବାକ୍ୟ
କଷ୍ଟୁର ଭାବରେ,
ଏବେ ଦେଖି ତବ ଆପଦ ସମୟ
ଅବଳା ହୃଦୟ ମୋର
ହୁଏ ତରଳିତ, ଭାବ
ଭବିଷ୍ୟତ ଦୁର୍ଦ୍ଦଶା ଭୂମ୍ବର ।
ତବ କୃତ ଅପରାଧ
ଜୀବନରେ ଲବେ ମାନ ଶାନ୍ତ
ନ ଦେବନ୍ତି କେବେ ।
ଏ ରାଜ ବଭବ ଭୋଗ
ନାହିଁ ତବ ଭାଗ୍ୟେ ।
ଅନ୍ତିମ ସମୟ ତବ
ହେଲା ଉପସ୍ଥିତ !
ଭାବୁଅଛ ମନେ—
କରି ପଳାୟନ ରଖିବ ଜୀବନ ?
କିନ୍ତୁ ଭ୍ରାନ୍ତ ତବ ଏ ବଗୁର,
ନ ହେବ ପୂରଣ କେବେ ।
ଶାନ୍ତ ପିତା—
ଦେବେ କ୍ଷମା କ୍ଷମା ଗୁଣେ

ଅବା କ୍ଷମି ତବ ଅପରାଧ ।
କିନ୍ତୁ,
ପ୍ରଜାଗଣେ ବସି ରାଜସିଂହାସନେ
ଦେଇଅଛ ଯେଉଁ ପୁରସ୍କାର
ଏବେ ସେହି ପ୍ରତିହିଂସା
ପୂରଣ ଆଶାରେ,
ସର୍ବେ ଉନ୍ମୁକ୍ତ କୃପାଣ କରେ
କ୍ରୋଧଭରେ ମୁହୁର୍ମୁହୁ
ଝଣତ୍କାର ଶସ୍ତ୍ର—
ପ୍ରତୀକ୍ଷାରେ ଛନ୍ତି ରହି—
ତବ ପ୍ରତିକାର ନାହିଁ ଆଉ ।

ନେପଥ୍ୟେ—"ଜୟ ମହାରାଜ ବିଜୟ ସିଂହଙ୍କ ଜୟ"

ଦୁର୍ଜନ ସିଂହ—( ଚମକି ପଡି )
ଜ୍ୟୋତ୍ସ୍ନା !
ଆଉ ନାହିଁ ବାକ୍ୟାଳାପ କାଳ ।
ହାୟ ! ତବ ଶଶୀ-ମୁଖ ଦେଖି
ଘଟିଲା ମୋ ଏସନ ବିଭ୍ରାଟ ।
ଶୀଘ୍ର ! କର ବାକ୍ୟ ରକ୍ଷା—
ଅଶ୍ୱପୃଷ୍ଠେ କର ଆରୋହଣ;
ମୋର ବିଶ୍ୱସ୍ତ ସେବକେ
ରହିଛନ୍ତି ଗୁପ୍ତଦ୍ୱାର ନିକଟରେ ।
ଶୁଣିଥିବେ,

ବିଳମ୍ବରେ ହେବ କାର୍ଯ୍ୟନାଶ,
ଏ ସଙ୍କଟ ସ୍ଥଳୁ କରିବା ଗୋ
ଶୀଘ୍ର ପଳାୟନ ।

ଜ୍ୟୋତ୍ସ୍ନା—( ମସ୍ତଳଗ୍ରୀବା ଉତ୍ତୋଳନ କରି କ୍ରୋଧଭରେ )
ଦୂରହୁଅ ମୋ ନିକଟୁଁ
ପାମର ଦୁରାତ୍ମା !
ପାପ ମୁଖେ ପାପକଥା—
କରୁ ଉଚ୍ଚାରଣ,
ଲଜ୍ଜା ନାହିଁ ଛିଲେ ତୋର, ବର୍ବର ପାଷଣ୍ଡ !
ନିକଟରେ ମୃତ୍ୟୁ ଅନିବାର୍ଯ୍ୟ,
ତେବେ ରେ ଦୁରାତ୍ମା !
ପାପ ପଥୁଁ—ପାପକାର୍ଯ୍ୟୁଁ
ନ ହୁଏ ନିବୃତ୍ତ କପାଁ ମନ ତୋର ?
ପ୍ରାଣରକ୍ଷା ପାଇଁ
କର ବିଭୁଚରଣେ ପ୍ରାର୍ଥନା,
ଦିଅନ୍ତୁ ମୁକ୍ତିନ ।

ଦୁର୍ଜ୍ଜନ ସିଂହ—( ସ୍ୱଗତ )
କିବା ତେଜ୍ରା ପ୍ରାଣପ୍ରତି ଅବା—
କିବା ଧର୍ମ ପ୍ରତି ଭକ୍ତି ଅଭି ?
ଅମୀତ ଅଗ୍ରେରେ ହୋଇ ଅଗ୍ରସର
ଅଭି କିବା ଲଜ୍ଜା ?

ଅସି ଏବେ ଶେଷ ଦଶା—
ଦେଖେଁ ଶେଷ ପାପ ପଥ
ପରିଣାମେ କିବା ହୁଏ ।
ସ୍ନେହ ବାକ୍ୟେ ନ ପାରିବ କରି ବଶ
ନ କରିବ ଅଙ୍ଗୀକାର
ଯିବାକୁ ସଙ୍ଗରେ ମୋର ।
ଏ ବାମାର ଦର୍ପଚୂର୍ଣ୍ଣ—
ନ ପାରିଲେ କରି
ଅବା ନ ଲଭିଲେ ତାକୁ,
କି ହେବ ପୂରଣ ମୋର ପ୍ରତିହିଂସା କେବେ ।
କରି ବାହୁବଳ
ରମଣୀରେ ଆକର୍ଷିବ ବଳେ ।

( ସହସା ଜ୍ୟୋତ୍ସ୍ନାର ହସ୍ତଧାରଣ କରିବା ; କରସ୍ପର୍ଶେ ଜ୍ୟୋତ୍ସ୍ନାର ସର୍ବାଙ୍ଗ ଥରିବା ; ଜ୍ୟୋତ୍ସ୍ନା ସଜୋରେ ହସ୍ତ ଛଡାଇ ଦୁର୍ଜନ ଉପରେ ପଦାଘାତ କରିବା ; ଦୁର୍ଜନର ପୁନର୍ବାର ହସ୍ତଧାରଣ ସତ୍ତ୍ୱେ ଜ୍ୟୋତ୍ସ୍ନା କଟି ଦେଶରୁ ଲୁକ୍କାୟିତ ଭାବେ ହସ୍ତରେ ଛୁରିକା ବାହାର କରି ଦୁର୍ଜନର ବକ୍ଷ ଦେଶକୁ ଲକ୍ଷ ଉତ୍ତୋଳନ କରିବା । )

ଜ୍ୟୋତ୍ସ୍ନା—( ସକ୍ରୋଧେ ) ସାବଧାନ !
ସାବଧାନ ରେ ନରପିଶାଚ !
ଏକପଦ ହେଲେ ଅଗ୍ରସର
( ଛୁରିକା ଦେଖାଇ )
ଏ ତୀକ୍ଷ୍ଣ ଛୁରିକାଘାତେ
ଦେଖାଇବ ବୀରବାଳା—

ସ୍ୱାର୍ଥେତର କର୍ମ ।
ମ୍ଳେଚ୍ଛ, ବିଶ୍ୱାସଘାତକ, ଦସ୍ୟୁ, ରେ ବର୍ବର ।
ଦେଖିବୁ ତୁ କ୍ଷତ୍ରୀୟ ବାଳାର
କ୍ଷତ୍ରକାର୍ଯ୍ୟ
ନରାଧମ ।

( ତୁରକା ଦୁର୍ଜ୍ଜନର ବକ୍ଷ କଣ୍ଠରେ ଧାରଣ ଓ ଦୁର୍ଜ୍ଜନର ସଭୟେ
ପଶ୍ଚାତ୍‌ପଦ ହେବା ସମୟେ ସହସା କେତେକ ସୈନ୍ୟ
ଓ ସେନା ସହ ଜ୍ୟୋତିଃ ସିଂହର ପ୍ରବେଶ ଓ
ଦ୍ୱାରଦେଶେ ଉନ୍ମୁକ୍ତ ତରବାରି ହସ୍ତେ
କେତେକ ସେନାଙ୍କର ଦଣ୍ଡାୟମାନ )

ଜ୍ୟୋତିଃ ସିଂହ—( ସହସା ପ୍ରବିଷ୍ଟ ହୋଇ )
ଅରେ ରେ ପାମର !
କୁଳାଙ୍ଗାର,
ନରପଶୁ ! କରୁ ଚେଷ୍ଟା
ରମଣୀର ଗୌରବ ନାଶନେ ?
ନ ଵଗ୍ନର ଛଳେ
ରେ ପାଷଣ୍ଡ ! ଅରେ ରେ ପିଶାଚ !
ବିଦ୍ୟୁତ୍ ବେଗେ
କରିଥାନ୍ତା ଏହି ଅସି
ତବ ଗ୍ରୀବା ପ୍ରଦକ୍ଷିଣ ।

କାନ୍ତୁ ଦୁର୍ଗନ୍ଧ ମୂଷିକ ।
ନାରୀହତ୍ୟା, ଭ୍ରୂଣହତ୍ୟା,
ବାଳହତ୍ୟାକାରୀ ନରକର କୀଟ
କରିଣ ସଂହାର
ନ କରିବ ଏ ବିମଳ ଅସି
ପାପେ କଳଙ୍କିତ କେବେ ।

(ସୈନିକ ପ୍ରତି) ସୈନ୍ୟବୃନ୍ଦ !
ଏ ଦୁରାତ୍ମା
ହସ୍ତ ପଦେ—
କର ଶୀଘ୍ର ଶୃଙ୍ଖଳା ବନ୍ଧନ ।

( ଦୁର୍ଜ୍ଜନ ସୈନ୍ୟବୃନ୍ଦ ସହ ଯୁଦ୍ଧ କରିଣ ପରେ ଅସ୍ତ୍ରଚ୍ୟୁତ ହେବାରୁ ମଲ୍ଲଯୁଦ୍ଧ ଆରମ୍ଭ ପରେ ବନ୍ଦୀ ହେବା; ସୈନ୍ୟଗଣ ଦୁର୍ଜ୍ଜନକୁ ହସ୍ତପଦେ ଶୃଙ୍ଖଳାବଦ୍ଧ କରିବା )

ଜ୍ୟୋତିଃ ସିଂହ—( ଜ୍ୟୋତ୍ସ୍ନାରୂପ ମୁଗ୍ଧ ନେତ୍ରେ ଚାହିଁ )

( ସ୍ୱଗତ )—ଏହି କି ସେ ରାଜଜେମା
ଜ୍ୟୋତ୍ସ୍ନାବାଈ ? ଧନ୍ୟେ ସୁବର୍ଣ୍ଣବରନା !
ଦେବୀ ନା ମାନବୀ ?
ନା—ନା—ଦେବୀ !
ବିରାଜଇ ଫୁଟି ଦେହୁଁ
ସ୍ୱର୍ଗୀୟ ସୁଷମା ପ୍ରଭା ।

(ପ୍ରକାଶ୍ୟେ) ଦେବୀ !

ଆଜି ହେଲି ଧନ୍ୟ
ପାଇ ମୁହିଁ ତବ ଦରଶନ
ଯୁମଙ୍ଗଳେ ନବ୍ରପଦେ ଅଛି ରହି,
ଏହା ଅଟେ ଭାଗ୍ୟର ବିଷୟ !
ପିତା ତବ କରି ଦୁର୍ଗଜୟ—
କରୁଛନ୍ତି ଅନ୍ୱେଷଣ—
ବ୍ୟାକୁଳ ମାନସେ ।

ଜ୍ୟୋତ୍ସ୍ନା —ଶୁଣି ହେଲି କୃତାର୍ଥ ଅନ୍ତରେ
ପିତାଙ୍କ କୁଶଳ ପୁଣି
ଦୁର୍ଗୋଦ୍ଧାର ବାଣୀ ।

(ବଦ୍ଧ କରାଞ୍ଜଳି ପୁଟେ) ଜନନୀ ମଙ୍ଗଳା ଦେବୀ
ଦେବ ଏକଲିଙ୍ଗ ପ୍ରଭୁ ପରସାଦେ
ପିତା ମୋର, ନଷ୍ଟ ରାଜ୍ୟ ହେଲେ ପ୍ରାପ୍ତ;
ସହସ୍ର ପ୍ରଣତି କରେ—
ହର ଉମା ପଦେ ।        ( ପ୍ରଣାମ କରିବା )

( ଜ୍ୟୋତିଃ ସିଂହ ପ୍ରତି ) ହେ ମହୋଦାର ବୀର !
କଲେ ଦାନ—
ତୃଷାତୁରେ କୃପାବାରି ଆଜି—
ମୃତଜନେ ପୀୟୂଷ ସେଚନ

ଶୁଣାଇଲ ଏ-ଶୁଭ ସମ୍ବାଦ ।
କେଉଁ ଉପହାରେ ତୋଷିବି ମୁଁ ତବ ଚିତ୍ତ ?
ଏବେ ମୁଁ ସନ୍ତାନୁଭୂତ—
ସାଦରେ ଗ୍ରହଣ, ଅଭି
ଚିର କୃତଜ୍ଞତା ତବଠାରେ ।

( କ୍ଷେତ୍ରଜିତ୍ ସିଂହ କ୍ଷେତ୍ରାର ବାକ୍ୟ ନତଶିରେ ଗ୍ରହଣ କରିବା ଓ ସେନାଗଣ ଏବଂ ବନ୍ଦୀ ଦୁର୍ଜନ ସିଂହକୁ ଧରି ପ୍ରସ୍ଥାନ କରିବା )

କ୍ଷେତ୍ରା— ( କ୍ଷେତ୍ରଜିତ୍ ସିଂହକୁ ସସ୍ନେହେ ଅନାଇ )
( ସ୍ୱଗତ ) ଅହା ! କି ହୁଏ ମାନସ ମୋର
ଦେଖି ନବ ସୌମ୍ୟ ମୂର୍ତ୍ତି ସରଳତା ଭବ,
ଶୁଣି ମିଷ୍ଟ ବାଣୀ,
ଉପୁଜେ ହୃଦୟେ ମୋର
ଅତର୍କିତେ କି ଏକ ନବୀନ ଭାବ—
ପୀୟୂଷ ପ୍ରବାହେ ନିମଜ୍ଜାଇ ଦଗ୍ଧଜୀବ,
ଦେଖି ନବାଗତ
ପୁରୁଷ ପୁଙ୍ଗବ ବୀରେ
ହୋଇଯାଏ ମରୁହୃଦ—କ୍ଷଣେ ବିପ୍ଳାବିତ
କି ଅଦୃଶ୍ୟ ଶକ୍ତି ବଳେ !

( ସହସା ବିଜୟ ସିଂହର ପ୍ରବେଶ )

ବିଜୟ ସିଂହ—ଅସ ମୋର
ଅନ୍ତର ଲଭ୍ୟ !

ସ୍ନେହର ଦୃଢ଼ତା
ମଣିହରାଫଣିବତ
ଦୁର୍ବହ ଜୀବନ ଥିଲ ବହୁ ।
ତୋହ ପରି ଅମୂଲ୍ୟ ରତନ
ଦେଇ ଅମାନୁଷ ଶତ୍ରୁର ହସ୍ତରେ
କି ଆଶାରେ ପିତା ତୋର କରି—
ରହିଥାନ୍ତା ହୃଦ ଦମ୍ଭି
ମାଆ ମୋର ?
ତୋତେ ଉଦ୍ଧରିବା ଆଶେ
କରୁଥିଲି ସୈନ୍ୟସଙ୍ଗଠଣ,
ବିଭୁପାଦେ କରୁଥିଲି ଲୟ
ବିଜୟ ଆଶାରେ ।
ଆସ ମା,
ଏକମାତ୍ର ନୟନପିତୁଳା ମୋର !

( ଜ୍ୟୋତ୍ସ୍ନାବାଈ ପିତାଙ୍କ ନିକଟକୁ ଆସି ଚରଣରେ ପ୍ରଣିପାତ କରିବା ଓ ବାଷ୍ପାବରୁଦ୍ଧକଣ୍ଠେ ଅଶ୍ରୁପତନ; ବିଜୟ ସିଂହ ଜ୍ୟୋତ୍ସ୍ନାକୁ ଉଠାଇ ମସ୍ତକ ଘ୍ରାଣ ପୂର୍ବକ ଆଶିଷ୍ୟକରଣ । )

## ପଟ୍‌ପରିବର୍ତ୍ତନ



# ତୃତୀୟ ଦୃଶ୍ୟ

ରାଜପଥେ—ବଦୂଷକ

( ସସବ୍ୟସ୍ତେ ପ୍ରବେଶ ଓ ଭୟାଚ୍ଛନ୍ନ ଭାବେ )

ବଦୂଷକ—ରଜା ଏତେ ଭାବେ କହୁଥିଲେ, ସୈନକ ଗୃହଜଣ କଣ ନ କଲେ ! ଯୁଦ୍ଧର ଗୋଳମାଳ ଶବ୍ଦ ଶୁଣି ତାଙ୍କର ରକ୍ତଟା ଏତେ ଗରମ ହୋଇଗଲା ଯେ ଏକାଥରକେ ମୋ ଶବାଷଟା ଭୁଇଁରେ ଦୁଲ୍‌କନା କଗୃଢ଼ ଦେଇ ଯୁଦ୍ଧ ଭୂମିକୁ ଏକ ନଶ୍ବାସକେ ଚମ୍ପଟ ! ମୁଁ କଣ ଆଉ ଥିଲି ! ଏପାଖରୁ କାଣ୍ଡ ସାଇଁ ସାଇଁ—ସେ ପାଖରୁ ବନ୍ଧୁକ ଢ଼ାଇ ଢ଼ାଇ ମୋ ମୁଣ୍ଡ ଉପରୁଟାରେ ଉଡୁଥାଏ । ଭାଗ୍ୟକୁ ବଡ ବରଗଛଟାଏ ସେଠାରେ ଥିଲା ବୋଲି ତା ଆଢୁଆଳରେ ରହୁ ଯିବାରୁ ମୋ ପ୍ରାଣଟା ରହୁଗଲା । ସେଠୁଁ ତ—ଲସରପସର ହୋଇ ଧାଇଁଛୁ । ଯୁଅଡ଼େ ଦେଖ ମଡ଼ା ଲୁଢ଼ ଲୁଡ ! ଆଇ ବାପା ଲୋ ! ସେ ସୈନକ ଗୃହଟା ଯାଇ ଦାନ୍ତ ନକଟି ଖତମ୍ । ତାଙ୍କ ମୁଣ୍ଡ କୁଅଡ଼େ ଗଣ୍ଡି କୁଅଡେ ! ଏଇ ସବୁ ଭୟଙ୍କର ବଭୀଷିକା ମୋର କେତେ ଦନଯାଏ ମନେ ପଡ଼ିବ । ଏ ଦାନ୍ତ ନକଟା ରୂପ ସଦା ଆଖିରେ ନାଚୁଥିବ—ନଦରେ ସୁଦ୍ଧା ସ୍ୱପ୍ନ ଦେଖିବ । ସୈନକ ଗୃହଟା ଏଯାଏ ହେବାକୁ ଦଉଡ଼ୁଥିଲେ ! ଏମିତ ଫଞ୍ଚାର ଏତେ ମେଳା ମଉଛବ ତୁମକୁ ଗଢ଼େଇଲା । ହାୟରେ ହାୟ ! କେତେ ଅଗ୍ରହରେ ଦଉଡଗଲେ କ ସତେ

ଯେମିତି ଭେଳକଘର ପଡ଼ୁଛି । ମୁଁ ଯୁଦ୍ଧକୁ ଦେଖି ପ୍ରାଣ ବିକଳରେ ଅନ୍ତଃପୁରରେ ଧାଇଁଛି ଏବେ ଯିବ କୁଆଡେ଼ । ହେଉଛି ତ ନଅରଟା ବଣି ଗଲାଣି । କାହିଁ ରେ ବାପା । ସେ ନଅରରେ ତ ଦୁର୍ଲ୍ଲଭ ରଜାଟା ଥିବ, ଗଲେ ଆଉ ରକ୍ଷା ଅଛି ? କରେଁ କଣ ?

( ନେପଥ୍ୟେ ନାଯୁଦ୍ଧବାଦ୍ୟ ଓ ଜୟନାଦ )

( ଚମକି ପଡ଼ି ) ଆହୁରି କଲବଲା ରଡ ଶୁଭୁଛି । ଏ ଆଡକୁ ଆସିଯିବେ ପରା । ଏଥର ବଞ୍ଚିଲେ—ଆଉ ଏ ରଜାର ମୋର ଏଣିକି ସାଙ୍ଗ ରେ ବାବା ! ବ୍ରାହ୍ମଣ ପିଲା, ବ୍ରାହ୍ମଣିଆ ଭିକ୍ଷା କରି ମାଗି ଯାଚି ଖାଇ ଦି ଦିନ ହେଲେ ଏ ସଂସାରେ ରହିଥିବି— ଏବେ ଯେମିତି ହେଲାଣି ବ୍ରାହ୍ମଣୀର ମୁହଁ ଦେଖା ବିଷମ ! ଏ ଥାଣରୁ ବଞ୍ଚିଲେ ତ !

( ଇତସ୍ତତ ଭାବେ ଦଉଡ଼ି )

( ନେପଥ୍ୟେ ରଣଶିଙ୍ଗା ଧ୍ୱନି କରି ଦୁଇଜଣ ସୈନିକର ପ୍ରବେଶ )

ବିଦୂଷକ—( ତଟସ୍ଥ ଭାବେ ) ବାବା ! ମା-ଆ-ଲୋ ! କୁଆଡ଼େ— ଲୁଚିବି, କେଉଁଠି ଲୁଚିବି ! ଏ ତ ସେ ପୂର୍ବ ଦକ୍ଷିଣାଦିଆ ସିପାହି ପରି ଦିଶୁଛି ? ମା ମଙ୍ଗଳେ ସଙ୍କଟତାରିଣି ! ଏ ଘାତକ ରକ୍ଷାକର, ଏ ସଙ୍କଟରୁ ବଞ୍ଚା (ଥରି ଥରି ଲୁଚିବା) ।

୧ମ ସୈନିକ—ହେ-ହେ ଗୋସାଇଁ ! ଅସନ୍ତୁ ରଜାଙ୍କ ଡ଼ାକରା ହୋଇଛି ।

ବିଦୂଷକ—ରଜା ! ରଜାଙ୍କ ଡକରା । ଓହୋ, ମରିଗଲି ! କ୍ଷମାକର । ମୁଁ ବ୍ରାହ୍ମଣଟାଏ—ମୋତେ କମିତ ହେଲେ ବଞ୍ଚାଅ । ବାବୁ, ତମ-ଧର୍ମରହିବ—ବଞ୍ଚିଥିଲେ ତମ ଗୁଣ ଗାଇ ବୁଲିବି—

୨ୟ ସୈନିକ—ମହାରାଜା ତୁରନ୍ତ ସାଙ୍ଗରେ ଧରି ନେବାକୁ ଆଦେଶ କରିଅଛନ୍ତି ।

ବିଦୂଷକ—ହେଲି—ହେଲି, ତମେ ମୋର ସବୁ ତମେ ମୋର ରଜା, ଜୀବନ ରକ୍ଷକ, ତମେ—ତମେ ରଖିଲେ ରଜା କଣ କରିବେ ? କହିବ ସେ ଡରୁଆ ବ୍ରାହ୍ମଣଟା ଛନିଆ ହୋଇ ମରିଗଲା— ତମ ପୁଣ୍ୟ ହେବ । ତମ ହାତ ଧରୁଛି, ଲକ୍ଷେ ବରଷ ବଞ୍ଚିଥାଅ ବାବା—ତମର ଜୟ ଜୟ ହେଉ—

୧ମ ସୈନିକ—ଆହେ ଶୁଣ—ଖାଲି ପାଗଳ ପରି ତମର ତମେ ବକୁଛ ଯେ । ମହାରାଜା ପରା ଆପଣଙ୍କୁ ନେବାକୁ ଆଜ୍ଞା କରିଛନ୍ତି । ( ହାତଧରି ) ଶୁଣନ୍ତୁ—

ବିଦୂଷକ—( ଭୟରେ ଥରହର ହୋଇ ) ମରିଗଲି—ଆଉ ଏଥର ରକ୍ଷା ନାହିଁ—ନିଶ୍ଚେ ବାଡ଼େଇ କରି ମାରିଦେବେ—ଥରେ ସିନା କମିତ ପଳାଇ ଆସିଥିଲି—( ସୈନିକ ପ୍ରତି ) ବାବୁ ! ମହାରାଜା ଅନୁଗ୍ରହ କରି ମୋର ପରା ମୁହଁ ଦେଖିବେ ନାହିଁ ବୋଲି ଘଉଡ଼ାଇ ଦେଇଛନ୍ତି । ପୁଣି କାହିଁକି ଡ଼ାକିଲେ ? ଏଥର ନିଶ୍ଚେ କାରାଗାରରେ ମୋତେ ବନ୍ଦୀ କରିବେ । ଭୋକରେ ଶୁଖି ଶୁଖି ମରିଯିବି ! ଓହୋ ମୁଁ ଟିକଣ ଖିଅ

ଲୋକ, ଘଣ୍ଟେ ନ ଖାଇଲେ ମରିଯିବ, କଲବଲରେ ଯା ମରିବ
ଏଠି ନିଶ୍ୱାସ ବନ୍ଦକରି ମରୁଛି । ( ଆଖି ତରାଟି ନିଶ୍ୱାସ
ବନ୍ଦକରି ମରିବା ଅଭିନୟ କରଣ )

୧ମ ସୈନିକ—ଭାଇ ! କଣ କରିବା—ଅହା ! ଏତ ଏତେ ଅତର୍ଷ୍ଟ
ହେଲେଣି ।

୨ୟ ସୈନିକ—ଭାଇ ! ମହାରାଜାଙ୍କ ସ୍ୱରରେ ଡ଼ାକ ତ ! ଖାଇବା ଚିଜ
ନାମ ଧରି ଖାଇବା ପାଇଁ ଡ଼ାକ ତ ଭଲ ।

୧ମ ସୈନିକ—ବୟସ୍ୟ ! ବୟସ୍ୟ ! ମୁଁ ବିଜୟ ସିଂହ, ଉଠନ୍ତୁ ଖାଇବା
ସମୟ ହେଲାଣି । ଆଜ ଭଲ ମିଠା ଖେଚଡ଼ି, ରସଗୋଲା,
ଦହି. ଭଲ ମିଠାର ଆୟୋଜନ ହୋଇଛି ।

ବିଦୂଷକ—( ଧଡ଼୍ ପଡ଼୍ ଉଠି ଆଖି ବୁଜି ) ମହାରାଜ ! ଚାଲିଲ ବିଜେ-
ହୁଅନ୍ତୁ । ବଡ଼ ଭୋକ ( ଚକ୍ଷୁ ଫିଟାଇ ) ଏ କଣ ରେ ?
ଅହା, ସେହି ସିପାହୀ ଯୋଡ଼ାକ ! ମରିଗଲି ରକ୍ଷାନାହିଁ !

୨ୟ ସୈନିକ—ଅମେ କିଏ ଜାଣୁଛନ୍ତି ? ଆମକୁ ଏତେ ଭୟ କାହିଁକି ?
ଅମେ ପରା ବିଜୟ ସିଂହଙ୍କ ସୈନିକ । ଦୁଷ୍ଟ ରଜା ଦୁର୍ଜ୍ଜନ
ସିଂହ ବନ୍ଦୀ ହେଲାଣି । ଗଡ଼ ଜୟ ହୋଇ ସାରିଲାଣି ।
କେବଳ ମହାରାଜ ଆପଣଙ୍କୁ ତଲାସ କରିବାକୁ ଆମ୍ଭଙ୍କୁ
ପଠାଇଛନ୍ତି ଓ ଖୋଜିବା ପାଇଁ ଚତୁର୍ଦ୍ଦିଗ ଲୋକ ପଠାଇ
ଅଛନ୍ତି, ଚାଲନ୍ତୁ ।

ବିଦୂଷକ—ଏ ସବୁ ମିଛ; ମୋତେ ଏମିତ ଠକୁଛ କାହିଁକି ?

୨ୟ ସୈନିକ—ଏ କଣ ନାଁ ଲଗେଇଛ ମାହାମୁରୁ ? ଅମେ ସିଛ କହୁନାହୁଁ, ଅମେ ସବୁ ଛଡ଼ିଯିବୁ ? ତମ ପଇତା ଛୁଇଁ କହୁଛୁ ମହାରାଜ. ବିଜୟ ସିଂହ ହଟାଇଛନ୍ତି । ଧୂର୍ଜଟିନାଥକୁ ବନ୍ଦକରି ସାରଲେଣି ସବୁ ।

ବିଦୂଷକ—ସତେ, ଓହୋ ! ଏତେବେଳକେ ଜୀବନ ପାଇଲି ହୋ ! ବେହୁସୋ ଦୁର୍ଜ୍ଜନ, ଦେଖିଲୁ ବ୍ରାହ୍ମଣର କସ୍ରମତ; ସେ ବାଧା ଗୋଇଠାର ଫଳ ପାଇଲୁ ? ଏ ସବୁ ବିଦୂଷକର ପ୍ରଶଂସା ? ଧା'ତ୍ ! ବୁଅଡ଼େ ଯିବ ଧର୍ମଟା ? ଗୃହ ଯୁଗରେ ଅଛୁ ! ( ସୈନିକ ପ୍ରତି ) ସତେ କହୁଛ ନା ବାପା, ମୋ ରାଣଟି ?

୧ମ ସୈନିକ—ସତ କି ମିଛ ଆସନ୍ତୁ ଦେଖିବେ ।

ବିଦୂଷକ—ଚାଲ ତେବେ ବାପା ! ତମ ଧର୍ମ ; ଚଣ୍ଡାଳର ମାରୁଦା ଫଳ ଫଳିଛି; ଦେଖିଲେ ସିନା କହିବ । ମୋ ଚୁଟିଟା ଧରି ଘୋଷଡାଇ ମାରିବାକୁ ବୁ କଏ ରେ ? ମୁଁ ସବୁ ଲୋକ ସହୁ ରହନ୍ତି ? ମୋତେ କଣ ଯାହା ତାହା କରି ପାଇଥିଲୁ କି ? ନ ଜାତା ବିପ୍ର ଦୁର୍ଜ୍ଜନା—

( ବ୍ୟଗ୍ର ଗତିରେ ପ୍ରସ୍ଥାନ )

## ପଟ୍‌ପରିବର୍ତ୍ତନ



# ଚତୁର୍ଥ ଦୃଶ୍ୟ

## ରାଜକକ୍ଷ

( ଜ୍ୟୋତିଃ ସିଂହ ପ୍ରହରୀବେଷ୍ଟିତ ଦୁର୍ଜ୍ଜନ ସିଂହ ଓ ସୈନ୍ୟଚୟ )

ଦୂତ—(ପ୍ରବେଶ କରି ଜ୍ୟୋତିଃ ସିଂହଙ୍କୁ ଅଭିବାଦନ ପୂର୍ବକ )

ସେନାପତେ !
ଆସୁଛନ୍ତି ଅନ୍ତଃପୁରୁ
ସଖୀସହ ରାଜକନ୍ୟା—
ପିତାଙ୍କ ଗହଣେ ।

ଜ୍ୟୋତିଃ ସିଂହ—ଅଚ୍ଛା ! ଯାଅ ସୈନ୍ୟଗଣ
ନେଇଣ ଅନ୍ତର,
ଦୁର୍ଜ୍ଜନକୁ ଥାନ୍ତୁ ଜଗି
ଅନ୍ତଃପୁର ବିଶ୍ୱାସୀ
ପ୍ରହରୀଗଣେ ?

( ସୈନ୍ୟଗଣଙ୍କ ଅନ୍ତରାଳକୁ ଗମନ )

( ଜ୍ୟୋସ୍ନା, ଓ ବିଜୟ ସିଂହଙ୍କ ପ୍ରବେଶ ଓ ଉପବେଶନ ଏବଂ ସଖୀଗଣ ପଶ୍ଚାଦ୍‌ଭାଗେ ଦଣ୍ଡାୟମାନ । )

ବିଜୟ ସିଂହ—(ଜ୍ୟୋସ୍ନା ପ୍ରତି —
ଜ୍ୟୋସ୍ନା ! ଏ ବୀରକୁମାର
କରିଛନ୍ତି ଯେଉଁ ଅସୀମ ସାହସ କର୍ମ
ହେଲା ରାଜପୁତବଂଶ—
ଗଉରବ ରକ୍ଷା ।

ଏହାଙ୍କ ସାହାଯ୍ୟେ
କଲ ଏହ ଦୁର୍ଗ କରାୟତ୍ତ ।
ଯୁବକ ପ୍ରବର ବଳେ ପାଇଲ ମୁଁ—
ହାରରତ୍ନ—
ନୋହିଲେ ତୋ ମୁଖ ଦେଖିବାକୁ
ନଥିଲ୍ଲ ଭରଷା ମୋର ।
ନ ପାରିବା କରି କେବେ
ପ୍ରତ୍ୟୁପକାର ତାଙ୍କ
ପରିଶୋଧ ଏ ଅମ୍ଭ ଜୀବନେ ।
ପାପିଷ୍ଠ ଦୁର୍ଜ୍ଜନ ସିଂହ
ପ୍ରଜାଚୟେ କରି ପୈଶାଚିକ ଶାସନ
ସ୍ୱେଚ୍ଛାଚାର—ତେଣୁ,
ପ୍ରଜାଚୟ ହୋଇଥିଲେ ପୂର୍ବ୍ବୁ
ବିଦ୍ରୋହସ୍ଥାପନେ ଉତ୍କଣ୍ଠିତ ।
ପାଇ ଅମ୍ଭ ସାହା
ଜ୍ୟୋତିଃ ସିଂହ ଅଗ୍ନେୟ ବଚନ
ପ୍ରଜା ବାର୍ଦ୍ଧଶ୍ୱାସ ହେଲ୍ଲ
ଦୁର୍ଜ୍ଜନର କାଳ ।

( ଦୁର୍ଜ୍ଜନ ବନ୍ଦୀ ଅବସ୍ଥାରେ ଈଷତ୍ ରୋଷାନ୍ୱିତ ଭାବେ ଜ୍ୟୋତିଃ ସିଂହ ପ୍ରତି )

ରେ କୁକ୍କୁର !
ରାଜଦ୍ରୋହୀ !
ଦେଖନ୍ତ ମୁଁ ଥିଲେ ଥରେ ସ୍ୱତନ୍ତ୍ର ଭାବରେ !

ରାଜା ବିଜୟ ସିଂହ—( ସକ୍ରୋଧେ )—

ରେ ପାଷଣ୍ଡ
ପ୍ରଭୁଦ୍ରୋହୀ
ଅନଢବଲମ୍ବେ
ମସ୍ତକବିହୀନ ହୋଇଥାନ୍ତା —
ଦେହ ତୋର
ଜନ୍ତୁ ।
ଥିଲି ଦିନେ ହୋଇ୍ ଏହି
ଦୁର୍ଗେ ନରେଶ୍ୱର
ବସି ରାଜସିଂହାସନେ
ଗର୍ବିଭରେ ଧରଣ ଶାସନଦଣ୍ଡ
ବନା ଦୋଷେ ଜ୍ୟୋତିଃ ସିଂହେ
ଦେଇଥିଲି ପ୍ରାଣଦଣ୍ଡାଦେଶ ।
ଉପସ୍ଥିତ ଏବେ ସେହି ଜ୍ୟୋତିଃ ସିଂହ ।
ଆଜ ସହସ୍ର ପରଜା—
ଶତ ଶତ ଜନ ମଧ୍ୟେ
ଅର୍ପିବି ରେ ନରାଧମ
ତୋହର ବିଗ୍ରହଭାର—
ଜ୍ୟୋତିଃ ସିଂହ କରେ ।
ଦେଖିବେ ସମସ୍ତେ
ପାପୀର କି ହୁଏ ପରିଣାମ ।

ଜ୍ୟୋତ୍ସ୍ନା—( ଭକ୍ତି ପୂର୍ବକ ପିତାଙ୍କୁ ଜଣାଇବା )

ପୂଜ୍ୟପାଦ ପିତା ।

ତବ ସ୍ନେହର ଦୁହିତା
କରେ ଭିକ୍ଷା—
ବଣ୍ଟପ୍ରସ୍ଥା ହୀନ ଲୋଭ,
କରୁଛନ୍ତି ସଦା ନରୀକ୍ଷଣ ।
ତାତ !
କିବା ଫଳ ଦେଇ ପ୍ରାଣଦଣ୍ଡାଦେଶ ?
ଥାଉ ପାପୀ ହୋଇଣ ଜୀବିତ ଭବେ,
ଚିରଦିନ ଭୋଗୁଥାଉ
ନିଜକୃତ ପାପଫଳ-
ଅନୁତପ୍ତ ହୃଦେ ।

ବିଜୟ ସିଂହ—( ଈଷତ୍ ହାସ୍ୟେ )
ଅହା !
ମା ମୋର
କରିନାହିଁ ଅନୁରୋଧ ଦନେ,
କହ ନାହିଁ ଏପରି ବଚନ;
ଆଜ ଦେଖି ପାପୀ ପରିଣାମ
ହୁଏ ହୃଦ ଦୟାରେ ତରଳ;
ତବ ଅନୁରୋଧ
କଲି ମାତ ଅଶିରେ ରକ୍ଷଣ !
କଲି କ୍ଷମା;
ଯାଅ ମାତା ଅନ୍ତଃପୁରେ ତବ,
ସଖୀ ମେଳେ—

କର ଯା ସମସ୍ତେ ମାନସ ସନ୍ତୋଷେ
ବନ୍ଧୁ ଚରଣ ପୂଜନ ?

(ଜ୍ୟୋତ୍ସ୍ନା ବାଈ ଲଳିତା ଓ ନର୍ମଦାବାଈ ସଙ୍ଗେ ନେପଥ୍ୟେ ଅନ୍ତଃପୁରକୁ ପ୍ରସ୍ଥାନ)

( ପ୍ରହରୀର ପ୍ରବେଶ )

ପ୍ରହରୀ—ମହାରାଜ !
ସେନାପତି—
ଛାମୁ ଦର୍ଶନାଭିଳାଷେ
ଅପେକ୍ଷାରେ ଅଛନ୍ତି ଦୁଆରେ ।

ବିଜୟ ସିଂହ—ଯାଇ ଶୀଘ୍ର
ଦେଇ ଆସ ତାଙ୍କୁ ।

( ପ୍ରହରୀର ପ୍ରସ୍ଥାନ ଓ କେତେକ ସୈନ୍ୟଙ୍କସହ· ରତ୍ନବୁଳୁଳା—
ହସ୍ତେ ସେନାପତିଙ୍କ ପ୍ରବେଶ, ରାଜାଙ୍କ ନିକଟରେ ରତ୍ନବୁଳୁଳା
ସ୍ଥାପନ ଓ ଅଭିବାଦନ । )

ବିଜୟ ସିଂହ—ସେନାପତେ !
କି ସମ୍ବାଦ—
କାହୁଁ ବା ପାଇଲ ଏହି ରତ୍ନରାଶି ?

ରଣଜିତ୍ ସିଂହ—ମହାରାଜ !
ଦୂର୍ଜ୍ଜନ ନିହର ମନ୍ତ୍ରୀ
ଅମ୍ଭ ଦୁର୍ଗ ସୁଡ଼ଙ୍ଗ ମାର୍ଗରେ
କତିପୟ ଅନୁଚର ସହ
ରାଜକୋଷ କରିଣ ଲୁଣ୍ଠନ

ଅଶ୍ୱପୃଷ୍ଠେ ରତ୍ନ ନେଇ
କରୁଥିଲି ଦେବ ପଳାୟନ ।
ସହସା ଭେଟିଲି—
ଗୁପ୍ତ ସୁଡ଼ଙ୍ଗ ମାର୍ଗରେ
ଘୋରତର ଯୁଦ୍ଧେ
ଅଶ୍ୱଗଣ ଅନୁଚରସହ
ଶରଣ ସିଂହଙ୍କୁ କଲି ହତ୍ୟା,
କଲି ବହୁମୂଲ୍ୟ ରତ୍ନ ହସ୍ତଗତ,
ଏହି ସେହି ରତ୍ନ ।

ବଳସ୍ୱ ସିଂହ—ଭଲ—ପାପଶ୍ରର ହେଲା—
ଉପଯୁକ୍ତ ପ୍ରାୟଶ୍ଚିତ୍ତ !
ଦୁଷ୍ଟ ମନ୍ତ୍ରୀ !
କୁମନ୍ତ୍ରଣା ଦେଇଣ ରାଜାକୁ—
କରୁଥିଲା ଶାନ୍ତ ରାଜ୍ୟେ ସଦା
ପ୍ରଜାବର୍ଗେ କଳବଳ
କୁଶାସନ ଗୁଣେ !
ଉପଯୁକ୍ତ ପ୍ରତିଫଳ ହେଲା ପ୍ରାପ୍ତି
ବାଧ୍ୟବଶେ ଦୁର୍ବୁଦ୍ଧି ପିଶାଚ ।
( ପ୍ରହରୀ ଓ ସେନାଙ୍କ ପ୍ରବେଶ )

ବଳସ୍ୱ ସିଂହ—( ସେନାପତି ଓ ପ୍ରହରୀ ପ୍ରତି )—
ଏ ବନ୍ଦୀକୁ ନେଇଯାଅ
ସମ୍ମୁଖ ଅମ୍ବର

କର ସୁଦୃଢ଼ ବନ୍ଧନ ।
ଆଜୀବନ କାରାବାସଦଣ୍ଡ
ଭୋଗ କରୁ ଦୁଷ୍ଟ ନିଜ କର୍ମାର୍ଜିତ ଫଳ ।

ପ୍ରହରୀ—ଯେ ଆଜ୍ଞା ମହିମା !

( ସେନାପତି ଶସ୍ତ୍ରଧାରୀ ସୈନ୍ୟଙ୍କ ସହ ଦୁର୍ଜ୍ଜନଙ୍କୁ ଆନୟନ ଓ କାରାଧକ୍ଷ ଠାରେ ସମର୍ପଣ କରିବା )

(ପ୍ରସ୍ଥାନ)

ରାଜା ବିଜୟ ସିଂହ—ଜ୍ୟୋତିଃ ସିଂହ ।
ଏ ଦୁଷ୍ଟର ଅନ୍ୟାୟ ବିଚାରେ
କେତେ ନିରୀହ ପ୍ରଜାଏ
ହୋଇଛନ୍ତି କାରାବଦ୍ଧ;
କାରାଧକ୍ଷେ ଜଣାଇ ଆଦେଶ
ଶୀଘ୍ର କରାଇବ ମୁକ୍ତ ।

ଜ୍ୟୋତିଃ ସିଂହ—ଯଥା ଆଜ୍ଞା ମହାରାଜ !
ସଦାଧୀନ ତାହା କରିବ ପାଳନ ।

ବିଜୟ ସିଂହ—ବତ୍ସ !
ବୀରତ୍ୱର ଅବଦାନେ
କିଣିଛ ହୃଦୟ ମୋର ।

ଜ୍ୟୋତିଃ ସିଂହ—( କୃତାଞ୍ଜଳିପୁଟେ )—
ଏ ଦାସର ଅଛି କିଛି ନିବେଦନ—
ଶ୍ରୀପଦ୍ମରେ ।

ବିଜୟ ସିଂହ—କହ ବତ୍ସ ନିର୍ଭୟ ଅନ୍ତରେ ।

ଜ୍ୟୋତିଃ ସିଂହ—ମହାରାଜ ! ଶମ୍ଭୁଙ୍କର—
ଏ ରାଜ୍ୟରେ ଅଜସ୍ର ବର୍ଦ୍ଧିତ ଅଛି
ଧାନ ଧାନ ମୂର୍ତ୍ତି,
ଜାଣେ ଏକା ଦେଶ ସେବା ।
ନିଜ ଜନବଳେ ସାଧି ପାଇଛି କର୍ତ୍ତବ୍ୟ
ମାତ୍ର ହେଲା ଛନଦନ,
ଗୃହେ ରୁଗ୍ଣା ବୃଦ୍ଧାମାତା
ଏକାକିନୀ ଥିବେ ବସି
ଚାହିଁ ମୋ ପଥକୁ ।
ମାତୃପଦ ସେବନୁ ଅନ୍ତର ହୋଇ
ଛନଦନ ମାତ୍ର
ଲଗେ ମୋତେ ଏହା ଛନ ଯୁଗାନ୍ତରବତ ।
ହେତୁ ଅନୁମତି ଦେବ !
ଅସେଁ ବନ୍ଦ ଜନନୀ ପଦ୍ମର ।

ବିଜୟ ସିଂହ—ଯାଅ ବତ୍ସ !
କାଲୁ ରଖ ମନେ
ଆଣିବ ସଙ୍ଗତେ ତୁମ୍ଭ ମାତାଙ୍କୁ ନିଶ୍ଚୟ,
ରହିବେ ସେ ରାଜ ଅନ୍ତଃପୁରେ ।

( ଜ୍ୟୋତିଃ ସିଂହର ପ୍ରସ୍ଥାନ )

## ଯବନିକା

# ପଞ୍ଚମ ଅଙ୍କ

## ପ୍ରଥମ ଦୃଶ୍ୟ

( ବିଜୟ ସିଂହଙ୍କ ମନ୍ତ୍ରଣାଗାର )

( ରାଜା ବିଜୟ ସିଂହ, କୃପାଳ ସିଂହ ମନ୍ତ୍ରୀ, ରଣଜିତ୍ ସିଂହ
ସେନାପତି, ମହାନନ୍ଦ ଶର୍ମା ବିଦୂଷକ । )

ବିଜୟ ସିଂହ—ମନ୍ତ୍ରୀ !

ମୋର ସ୍ନେହର ଦୁହିତା ଜ୍ୟୋତ୍ସ୍ନା !
ପରିଣତ ବୟସରେ
ରୂପେ ଗୁଣେ କରେ—
ରାଜଧର୍ମ୍ୟ ଆଲୋକିତ ।
ଜେମାମଣି ସମର୍ପିବ
କାହା କରେ
ଥିଲି ମୁହିଁ ସତତ ଚିନ୍ତିତ ।
କିନ୍ତୁ ! ହେଲି ବିଦୂରିତ ତାହା
ଭାବୁଛି ମୁଁ—
ବୀରଶ୍ରେଷ୍ଠ ଜ୍ୟୋତିଃ ସିଂହ କରେ
ଦେବି କୁମାରୀକୁ ମୋର;
କରି କାଞ୍ଚନରେ ମଣିଯୋଗ
ପରିଣୟ ସୂତ୍ରେ—

କରିବ ବେଦ ବିହିତାନୁସାରେ
ମାଙ୍ଗଳିକ ବିଧିରେ ବନ୍ଧନ ।
ମମ ଅଭିଳାଷ
ପ୍ରଜାପତି କରିବେ ସମ୍ପନ୍ନ
ସୁକଲ୍ୟାଣେ ।

ମନ୍ତ୍ରୀ କୃପାଳ— ମହାରାଜ !
ଉପଯୁକ୍ତ ପାତ୍ରେ
ହେବ ହେମ ମଣିର ସଂଯୋଗ !
ଈଶ୍ୱର ଇଚ୍ଛାରେ—
ପ୍ରଭୋ ! ଅଦେଖିବା ହେଉ
ସୁନକ୍ଷତ୍ର କେଉଁ ଦିନ
ଅଧୀନରେ ହେଲେ ଯେ ଅଦେଶ
ବିଧିମତେ କରାଇବ
ବିବାହ ବିଧିର ଆୟୋଜନ ।

ବିଦୂଷକ—ମନ୍ତ୍ରୀ ମହାଶୟ ! ଆୟୋଜନର ବିଳମ୍ବ ହେଉଛି ଯେ ! "ଶୁଭସ୍ୟ ଶୀଘ୍ରଂ" । କଥା କଣ କି, ଆମ୍ଭର ଦୁର୍ଦ୍ଧର୍ଷ ଦୁର୍ଜ୍ଜନ ସିଂହର ତାଡ଼ନାରେ ମହାରାଜାଙ୍କ ସଙ୍ଗରେ ଭ୍ରମଣ ବିଭ୍ରାଟ କଥା ତ ଆପଣ ଜାଣନ୍ତି । ତେବେ ରାଜ୍ୟଯାକ ଏପରି ବିଭ୍ରାଟ ଓ ମହାରାଜାଙ୍କ ରାଷ୍ଟ୍ରବିପ୍ଳବପାତରେ ସେ ସବୁରେ ମନ କଷ୍ଟ କରିବାକୁ ପଡ଼ିଥିଲା, କାଏ କୁଆଡେ ଛନ୍ଛନ୍ ହୋଇଥିଲି ତାର ଇୟତ୍ତା ନାହିଁ । ବର୍ତ୍ତମାନ ସେ ସବୁ— ଦୁର୍ଦ୍ଦଶା କ୍ଷୟ ହୋଇ କୁଆଡ଼େ ପୋଡ଼ିଜଳି ଗଲା ।

ଏବେ ମହାରାଜ ବିଜୟ ନରେଶଙ୍କୁ ଜୟଲକ୍ଷ୍ମୀ ଆଶ୍ରୟ କରି ଥିବାରୁ ଗୃହଆଡ଼େ ଏ ମହା ବିଜୟୋଲ୍ଲାସ ମୁଖରିତ; ଏବଂ ଆମ୍ଭେ ସେ ମହାମହିମ ବିଜୟ ସିଂହଙ୍କ ବିଶାଳ କଳ୍ପଦ୍ରୁମ ବାହୁ ଛାୟା ତଳେ ଗୃଣ୍ଡେ ଗୃଣ୍ଡେ ଆଶ୍ରୟ ନେବାକୁ ଆସିଗଲୁ । ଦେଖୁ ଦେଖୁ ରଥଚକ୍ର ଘୂରିବା ପରି ଆମ ଦଶାଟା ଘୂରି ପଡ଼ିଲା । ସୁଯୋଗ ଦେଖନ୍ତୁ, ଦୁଇଦିନ ନ ହେଉଣୁ ଖାଇବାର ଯୋଗାଡ଼ ! ଅନ୍ନପୂର୍ଣ୍ଣା ଜେମାମଣି ଜ୍ୟୋସ୍ନାଙ୍କ ବିବାହର ମହୋତ୍ସବ ଯୋଗାଡ଼, ବାଃ ବାଃ ରେ ଭାଗ୍ୟ ! ଏଥିରେ ଯଦି ବ୍ରାହ୍ମଣର ପେଟ ନ ପୂରିବ ତେବେ ପୂରିବ କେବେ ? ବହୁ କାଳରୁ କ୍ଷୁଧାରେ ଶୁଖିଥିବା ପେଟ ଏଥର ପୂର୍ଣ୍ଣ ହେବ । କେତେ ପିଠା, ମିଠାଇ, ଲଡୁ,ପାନଭୁଆ ଗଣ୍ଡା ଗଣ୍ଡା ମଣ୍ଡାରେ ରାଜ ଭଣ୍ଡାର ସରଘର ଭଙ୍ଗିବ । ଚନ୍ଦ୍ରାକାର ବେଦୀରେ ଦ୍ୱିଜମଣ୍ଡଳୀରେ ଚକାମାଡ଼ି ବସିଲା ଉତ୍ତାରୁ "ଚନ୍ଦ୍ରାକାରଂ ତାମ୍ରବର୍ଣ୍ଣ ଘୃତେନ ପରିପାଚିତଃ" ପଲମ, ପଲମ—ପଲମ, ପଲମ ବ୍ୟବସ୍ଥା ହେବ । ମନ୍ତ୍ରୀ ମହାଭାଗ ! ଠିକ ଏ ଦୃଷ୍ଟି ଦେଇ ଥିବେ । ଯେମିତି ସେଥିରେ ନବାତ ଗୃଣ୍ଡ ଯ୍ୟାଦା ଭାବରେ ପଡଥାଏ—ଏବଂ ମେଣ୍ଟାଏ ପେଯର ମିଳିବ ।

ବିଜୟ ସିଂହ—( ମନ୍ତ୍ରୀ ପ୍ରତି )

ମନ୍ତ୍ରୀ !

କହୁଥିଲେ ଗୁରୁ

ରାଜ ପୁରୋହିତ ପଣ୍ଡିତେ —

ଆଗତ ଫାଲ୍‌ଗୁନ ମଧୁମାସେ

ଶୁକ୍ଳବଦନ ଦଶମୀ ତିଥିରେ
ଚନ୍ଦ୍ରବାରେ ଅଛି ଶୁଭଲଗ୍ନ ।
ସେହି ଦିନ କର ଆୟୋଜନ—
ସମସ୍ତ ବିଷୟ । ଆଜ—
ବିଧିମତେ ଯାନ୍ତୁ
ସାମନ୍ତ ନୃପତିଚୟେ,
ଆମ୍ଭ କୁଳୋଚିତେ କର ନିମନ୍ତ୍ରଣ
ଜ୍ଞାତି ମିତ୍ର, ବନ୍ଧୁଗଣେ ପଠାଅ—
ମଙ୍ଗଳ ପତ୍ର ।
ମାଙ୍ଗଳିକ କାର୍ଯ୍ୟ ଉପଲକ୍ଷେ
ବିବାହର ଆୟୋଜନେ—
ଲଗନ୍ତୁ ସମସ୍ତ କର୍ମଚାରୀ
ନାହିଁ ଆଉ ଦିନ ।
ଅଛି ଅଳ୍ପକାଳ—
ଗୃହ ହର୍ମ୍ୟ ନଗର ମଣ୍ଡନେ
ଶିଳ୍ପୀଗଣ ଲାଗି ଯାନ୍ତୁ
ଯେ ଯାହାର କର୍ମେ ।

କୃପାଳ ସିଂହ—ଯଥାଦେଶ ମହାରାଜ !
କରିବି ପାଳନ,
କରନ୍ତୁ ମଙ୍ଗଳମୟ
ସୁମଙ୍ଗଳେ କାର୍ଯ୍ୟ ସମାପନ ।

ସେନାପତି ରଣଜିତ୍ ସିଂହ—ମହାରାଜ !
ସେନା ଦୁର୍ଗେ

ସୈନ୍ୟ ପାଇଁ ସୁରକ୍ଷିତ ଶସ୍ୟ ଅଛି
ବହୁଳ ଭାବରେ ।
ଦୁର୍ଗାଧ୍ୟ ବସ୍ତର ଯାଇ
ବଳବ ଟି ବନ୍ଧୁଶସ୍ୟ
ଜଣାଯାଏ ମୋତେ ।
ପ୍ରଭୂଙ୍କର ହୋଇଲେ ଆଦେଶ
ରଖିଦେଇ ସୈନ୍ୟଖର୍ଚ୍ଚ
ବିଧିଅନୁସାରେ, ଅତିରିକ୍ତ କରିଦେବୁ
ବିକ୍ରୟ ରାଜ୍ୟରେ ।
ଅବା ହେବ ଅନ୍ୟ କି ଆଦେଶ ?

ରାଜା ବିଜୟ ସିଂହ—ସେନାପତେ !
କର ତାହା
ସ୍ୱଳ୍ପ ମୂଲ୍ୟେ—
ପ୍ରତ୍ୟେକେ ବିକ୍ରୟ ।
ଏ ସମୟେ—
ଦରିଦ୍ର ପ୍ରଜାର
ହେବ କିଞ୍ଚିତ୍ ଉପକାର ।

ସେନାପତି—ଯଥାଦେଶ,
କରିବ ପାଳନ ଦେବ !

## ପଟ୍ଟପରିବର୍ତ୍ତନ



## ଦ୍ୱିତୀୟ ଦୃଶ୍ୟ

ରାଜପଥ

(ଗୃହିଣୀଙ୍କ ପ୍ରବେଶ ଓ ଗାନ)

—ଗୀତ—

ସ୍ୱର୍ଗ ଶିଖ  ଫେର ବାରେ
ଫେର ରାଜ ଦରବାରେ
ଜୟ ଧ୍ୱଜା  ଉଡ଼େ ଆଜ
ଯଶୋଲକ୍ଷ୍ମୀର ଦ୍ୱାରେ-ଦ୍ୱାରେ ।

ମଧୁ ବାଅ ବନ୍ଦେ ମନ୍ଦେ
ଭାଗ୍ୟ ଦୋଳେ ନବଛନ୍ଦେ
ଆଉ କପାଁ କରୁଣ ସ୍ୱରେ
ବ୍ୟଥା ବାଜେ ବୁକ୍ତୁରେ !

## ପଟ୍ଟପରିବର୍ତ୍ତନ



# ତୃତୀୟ ଦୃଶ୍ୟ

## ରାଜ ଦରବାର

( ସିଂହାସନରେ ରାଜା ବିଜୟ ସିଂହ, ଦକ୍ଷିଣ ଦିଗରେ ଜ୍ୟୋତ୍ସ୍ନା ଓ
ବାମଦିଗରେ ଜ୍ୟୋତିଃ ସିଂହ, ସହଚରୀଗଣ ଅଲଟ ଚାମର ଧାରଣ
କରି ବ୍ୟଜନ କରୁଥିବା—ମନ୍ତ୍ରୀ କୃପାଲ ସିଂହ, ରଣଜିତ୍ ସିଂହ,
ରାଜଗୁରୁ ଶମ୍ଭୁନାଥ ଶାସ୍ତ୍ରୀ, ମହାନନ୍ଦ ଶର୍ମା ବିଦୂଷକ
ଯଥୋଚିତ ଆସନମାନଙ୍କରେ ଉପବେଶନ ।
ପ୍ରଜାଗଣ, ଭଦ୍ରମଣ୍ଡଳୀ ସଭାସଦ୍‌ଗଣଙ୍କର
ଯଥା ଆସନରେ ଉପବେଶନ । )

ରାଜା ବିଜୟ ସିଂହ—( ସିଂହାସନୁ ଉତ୍ଥାନ ପୂର୍ବକ )—

ସଭାସଦ୍
ପ୍ରଜାଚୟ !
ଅଛି ମମ ଏକ ନିବେଦନ
ହେଲା ତୁମ୍ଭମାନଙ୍କ ସାହାଯ୍ୟେ
ମାଙ୍ଗଳିକ କାର୍ଯ୍ୟ ସମାପନ ।
ଜ୍ୟୋତିଃ ସିଂହ କରେ
ସ୍ନେହର ଦୁହିତା ଆଜ
ପଉତୁକ ରୂପେ ରାଜ୍ୟ ସିଂହାସନ
କଲି ସମର୍ପଣ ।

ଅଦ୍ୟ ଅଭିଷେକୋତ୍ସବ
କରିବାକୁ ହେବ ସମାପନ ।

(ଜ୍ୟୋତିଃ ସିଂହ ପ୍ରତି)—ଅସ ବତ୍ସ !
ଆସ ମମ ସ୍ନେହର କୁମାର !
କର ସିଂହାସନ ଆରୋହଣ ।

( ବିଜୟ ସିଂହ ଜ୍ୟୋତିଃ ସିଂହର ହସ୍ତ ଧାରଣ କରି ସିଂହାସନେ ବସାଇବା ଓ ସ୍ୱମସ୍ତକରୁ ମୁକୁଟ ବାହାର କରି ଜ୍ୟୋତିଃ ସିଂହର ମସ୍ତକେ ପରିଧାନ କରାଇବା ଓ ଜ୍ୟୋସ୍ନାବାଈଙ୍କୁ ବାମ ପାଖରେ ଉପବେଶନ କରାଇବା । ସମସ୍ତ ଜନମଣ୍ଡଳୀ ଓ ପ୍ରଜା. ନରନାରୀଗଣ ଜୟନାଦ କରିବା ଏବଂ ବ୍ରାହ୍ମଣଗଣଙ୍କ ଆଶୀର୍ବାଦ, ମାଙ୍ଗଳିକ ଗାନ, ଶଙ୍ଖ, ହୁଳହୁଳି ଓ ବାଦ୍ୟନାଦ । )

ବିଜୟ ସିଂହ—( ଜ୍ୟୋତିଃ ସିଂହ ପ୍ରତି )
ବତ୍ସ ଜ୍ୟୋତିଃ ସିଂହ !
ପରଜା ପାଳନ
ଦୁଷ୍ଟର ଦଳନ ହେତୁ
କରେ ନୃପ ଅସି ଅଉ
ମୁକୁଟ ଧାରଣ ।
ଆଜି ହେଲ ଏ ରାଜ୍ୟର
ନବୀନ ବିଧାତା ତୁମ୍ଭେ,

ତେଣୁ ବୁଧମତେ
ପରଜା ପାଳନ
ନୃପତିର ଅଟଇ କର୍ତ୍ତବ୍ୟ କରମ ।
ଅନାଥା ପାଳନ,
ରୋଗୀ-ବାଳବୃନ୍ଦେ
ଶୁଶ୍ରୂଷା ସ୍ଥାପନ କରି ଅଟଇ ବହୁତ,
ଚିକିତ୍ସା ଅଗାର ରଖି
ରୋଗୀର ଶୁଶ୍ରୂଷା—
ଅଶିକ୍ଷିତ ପ୍ରଜାଗଣେ ଶିକ୍ଷାଦାନେ—
ରାଜ୍ୟେ—ପାଠଶାଳା କରିବ ସ୍ଥାପନ ।
ଅନ୍ୟାୟ ଦମନ —
ଚୌର୍ଯ୍ୟଭୟ ନିବାରଣ କାର୍ଯ୍ୟେ
ରାଜ୍ୟେ ସୈନ୍ୟ ରଖିବ ପ୍ରଚୁର ।
ନ ପାଇଣ ପରରାଷ୍ଟ୍ରଭୟ
ଯଥାବଧି ରାଜ୍ୟେ ପ୍ରଜା
ରହନ୍ତି ନିର୍ଭୟେ ।
ଦେଇ ସର୍ବଦଗେ ଦୃଷ୍ଟି
ଥିବ ନୃପ ସତର୍କ ଭାବରେ ।
ରାଜ୍ୟ ସିଂହାସନ ନୁହେ—
ଭୋଗର କାରଣ,
ବହୁକଷ୍ଟ ରାଜକାର୍ଯ୍ୟ ବିପଦର ସ୍ଥଳ ।
ସୁଯୋଗ୍ୟ ତ ତୁମ୍ଭେ,

କରି ସାମ, ଦାନ, ଦଣ୍ଡ, ଭେଦେ
ଶାସନ ବଳରେ ରାଜ୍ୟରେ ସୁଶାନ୍ତ,
ଶାସ୍ତ୍ର ବିଧିମତେ—
ସର୍ବ ପୁରାତନ ବନ୍ଧୁଜନେ
ପୁରସ୍କୃତ କରିବ
ରାଜ୍ୟର ପାଳନ,
ଯେସନ୍ତେ ରାଜ୍ୟେ—
ସଦା ଶାନ୍ତି ହୁଏ ବିରାଜିତ ।

( ଉଭୟେ ଦଣ୍ଡାୟମାନ ହୋଇ ପ୍ରଣାମ ପୂର୍ବକ )

କେୟାଙ୍କ ଓ ହିନ୍ଦ—ପିତଃ !
କରନ୍ତୁ କଲ୍ୟାଣ
ଯଥା ଏ ଅଧମ—
ନିର୍ବିଘ୍ନରେ ତବାଦେଶ କରିବ ପାଳନ ।

( କହି ଉଭୟଙ୍କ ଉପବେଶନ )

ନାଜର୍ ହିନ୍ଦ—( ସମ୍ମୁଖରେ ପ୍ରତି )
ପ୍ରିୟତମ ସୁହୃତମ
ପ୍ରଜାଗଣ ମମ !
ଅଛି ମୋର ଏକ ମାତ୍ର ଅନୁରୋଧ ଶୁଣ ।
ଗଲା ଦିନ ଏ ବିଶାଳ ରାଜ୍ୟଭାର ବହି
ଶିର କୋଳାହଳେ ।

ଇଷ୍ଟାନିଷ୍ଟ କରଣ ବଗୃର
ଦେଇଅଛ କେତେ ଜନେ
ଇଷ୍ଟାନିଷ୍ଟ ଫଳ ।
ଏକମାତ୍ର କେମା ମୋର
ସ୍ନେହର ସନ୍ତାନ,
କଲ ତାକୁ ସ୍ୱପାନେ ଅର୍ପଣ
ରାଜ୍ୟଭାର ସବ ।
ଦାନ ଲବ୍ଧ ଯେତେ ଧନ
ନବୀନ ନୃପ ଛାମୁରେ ଜଣାଇବ ଯାଇ ।
ଚତୁର୍ଥ ସମୟ ହେତୁ
ପୁଣ୍ୟ କାର୍ଯ୍ୟେ ବଳଇ ମୋ ମନ.
କରିବ ମୁଁ ତୀର୍ଥସେବା
କରିଛି ସଙ୍କଳ୍ପ ।
ସେହି ସ୍ୱର୍ଗସମ ବାରାଣସୀ କ୍ଷେତ୍ରେ
କରି ତପ—
କାଟାଇବ ଶେଷକାଳ ମୋର ।

ପ୍ରଜାଗଣ—( ଗୋପାଳଚନ୍ଦ୍ର ଭୂମ୍ୟଧିକାରୀ ପ୍ରଜାଙ୍କ ତରଫରୁ ଦଣ୍ଡାୟମାନ ହୋଇ ) ଉତ୍ତମ ପ୍ରସ୍ତାବ ! ହେଉ ମହାରାଜ ! ଛାମୁଙ୍କ ଇଚ୍ଛା ପୂର୍ଣ୍ଣ ହେଉ ! ଅମ୍ଭେ ଛାମୁଁଙ୍କ ସୁଶାସନ ଫଳରେ ପୁତ୍ରଭଳି ପାଳିତ ହୋଇଅଛୁଁ । ବର୍ତ୍ତମାନ ଅମ୍ଭର ନବ ରାଜା କେୟାଣ୍ଡ଼ ହେବଙ୍କୁ ପିତାଭଳି ଭକ୍ତି କରିବାରେ ତ୍ରୁଟି କରିବୁ ନାହିଁ ।

( ଉପବେଶନ )

ବଳସ୍ତ ସିଂହ— ( ମନ୍ତ୍ରୀ ପ୍ରତି ) ମନ୍ତ୍ରୀ ।

ପାଇ ତବ ସୁମନ୍ତ୍ରଣା
ନିର୍ବିଘ୍ନେ ମୁଁ କରୁଥିଲି
ଏ ରାଜ୍ୟ ଶାସନ ।
ଏ ରାଜ୍ୟର ସମସ୍ତ ବାରତା
ଗୁପ୍ତ ରହସ୍ୟ ଯେତେକ
ଗୋଚର ତୁମ୍ଭଙ୍କୁ ।
ଯଥା ପାଳୁଥିଲ ମମାଦେଶ
ମନ୍ତ୍ରୀଚୂଡ଼ାମଣି ! ତଥା
ତବ ନବ ଅଭିଷିକ୍ତ
ନୃପାଦେଶ ପାଳି
କରାଇବ ଶାନ୍ତି ରାଜ୍ୟରେ ସ୍ଥାପନ ।

ମନ୍ତ୍ରୀ କୃପାଳ—( ଦଣ୍ଡାୟମାନ ହୋଇ )

ମହାରାଜ !
ପାଇ ଆମ୍ଭଙ୍କ ଶ୍ରୀମୁଖାଦେଶ
ହେଲି ଦାସ କୃତାର୍ଥ ଅନ୍ତରେ ।
ନବରାଜ କେଏ୍ଥାତଃ ସିଂହେ
ଦେବାହେଲେ ଯେଉଁ ରାଜନୀତି —
ଉପଦେଶ,
ସେହି ଉପଦେଶ ଆଜ
ଆମ୍ଭଙ୍କ ଅଶେଷେ
କରିବେ ପାଳନ ନିର୍ବିଘ୍ନରେ ପ୍ରଜାଚୟ ।

ଦେଖି ଅସୁଅଛି
ଚଣ୍ଡ ପରଂତପ କ୍ରମେ
ଯଶୋଲ୍ମୀର ସିଂହାସନେ
ନ ରହିବେ ଅନ୍ୟାୟୀ ରାଜନ ।
ନ୍ୟାୟପରାୟଣେ
ଜ୍ୟୋତିଃ ସିଂହ ସମ
ନଥିବେ ଯେ ପରଦେଶ ନୃପ ।
ଯଶୋଲ୍ମୀର ଭାଗ୍ୟାକାଶେ
ଜ୍ୟୋତିଷ୍କ ଆଦିତ୍ୟ
ହୋଇଲେ ଉଦୟ
ନ ରହିବ ଅନ୍ୟାୟ ତିମିର ।

( ଉପବେଶନ )

ରାଜା ବିଜୟ ସିଂହ—( ସେନାପତି ପ୍ରତି )
ସେନାପତେ !
ଥିଲ ତୁମ୍ଭେ ବାଲ୍ୟସହଚର ମୋର ।
କରି ସେନାର ଗୃଲନା
ଦେଖାଇଛ ଯାହା ତୁମ୍ଭେ
ବିକ୍ରମ ବିଜୟ,
ତୁମ୍ଭ ବଳରୁ ଏହି ଯଶୋଲ୍ମୀର ସିଂହାସନ
ରହିଛି ନିଷ୍କଣ୍ଟେ ।
ବନ୍ଧୁଭାବେ ସମ୍ମାନିତ କରୁଥିଲ ମୋତେ;
ଏବେ ତବ ନବ ନୃପ ଜ୍ୟୋତିଃ ସିଂହେ

ଦେଖାଇବ ଅନୁରକ୍ତ ।
କରେ ମୁଁ ପ୍ରାର୍ଥନା, ଦୁର୍ଗାପଦେ,
ଦେବୀ ରଣଚଣ୍ଡୀ
କରଣ ସୁଦୟା, କରୁ ବାସ
ତବ ଭୁଜଦଣ୍ଡେ,
ଦେଉ ସଦା ବିକ୍ରମ—ବିଜୟ ।

ଯେ ଧ ଣଜନ୍ ଷିଂହ—( ଦଣ୍ଡାୟମାନ ହୋଇ )
ମହାରାଜ !
ବୀରରକ୍ତ ପ୍ରବାହିତ ଦେହେ
ଥିବା ଯାଏ, ଧମନୀରେ ଉଷ୍ଣ—
ଶୋଣିତ ପ୍ରବାହ,
ନ ହଟିବ କେବେ ଏ କ୍ଷତ୍ରିୟ
ମାତୃଭୂମି-ରକ୍ଷଣ କର୍ମରୁ
ଆଜ ନରେଶ୍ୱର ମାନରକ୍ଷା କାର୍ଯ୍ୟୁଁ ।
ବୀରପୁତ୍ର
ଦେଶ ହିତେ ହରାଇଣ ପ୍ରାଣ
ଲେଖାଏ ଅମରାକ୍ଷରେ—
ସ୍ୱନାମ ସଂସାରେ;
ନୋହେ ମର
ନୋହେ ସେ ନଶ୍ୱର ।
ବନ୍ଦେ ! ଦୀର୍ଘ ଆୟୁ ଦାନେ

ରକ୍ଷନ୍ତୁ ଏ ନବରାଜା ଜ୍ୟୋତିଃ ସିଂହେ
କର ଆମ୍ଭ ପ୍ରାର୍ଥନା ପୂରଣ । ( ଉପବେଶନ )

ବଜ୍ରସିଂହ—( ରାଜଗୁରୁ ପ୍ରତି )
ପୂଜ୍ୟପାଦ ଗୁରୁଦେବ !
ଅଛ କ୍ଷତ ଆପଣଙ୍କୁ
ଅନ୍ତଃପୁର
ପୁଣ୍ୟ ଅନୁଷ୍ଠାନ ।
ଦେବ ପୂଜା, ଦାନ, ହୋମ,
ଯଜ୍ଞ-ଅନୁଷ୍ଠାନେ ଦେଇ ଶିକ୍ଷା—
ଜ୍ୟୋତିଃ ସିଂହେ
ଧର୍ମ କାର୍ଯ୍ୟେ କରାଇବେ
ସତତ ମଗନ ।

ରାଃ ଶମ୍ଭୁନାଥ ଶାସ୍ତ୍ରୀ—( ଦଣ୍ଡାୟମାନ ହୋଇ )
ମହାରାଜ !
ହେଲି ମୋର ଅତ୍ୟନ୍ତ ସନ୍ତୋଷ,
ଧର୍ମମତେ ଦେଇ ଉପଦେଶ
ଶାମ, ଦାନ, ଭେଦେ
କରାଇବ ରାଜ୍ୟର ଶାସନ ।
ଜାଣନ୍ତୁ କୁମାର ନିଜେ ମଧ୍ୟ
ଶାସନ ବିଧାନ ।
କରେ ଆଶୀର୍ବାଦ—

ରହୁଛ ମୋ ଆଶା
ଚିରଶାନ୍ତ ବିରାଜିବ ରାଜ୍ୟେ
ବିଭୁ ପରସାଦେ । ( ଉପବେଶନ )

ମହାନନ୍ଦ ବିଦୂଷକ—( ଦଣ୍ଡାୟମାନ ହୋଇ ମନ୍ତ୍ରୀପ୍ରତି )—
ମନ୍ତ୍ରୀ ମହାଶୟ ! କର୍ଣ୍ଣରେ ଏହା ଶୁଣିବାକୁ ଥିଲା । ପୁଣି ପାପ-ନେତ୍ର ଦେଖିବ ! ବ୍ରାହ୍ମଣ-ବତ୍ସଳ ମହାରାଜା ବାନପ୍ରସ୍ଥରେ ଚାଲିଯିବେ । ହାୟ ! ହାୟ ! ମୋର କେତେ ଆଶା ଗଲା ! ଖାଇବା, ପିଇବା ଭବିଷ୍ୟତରେ କେତେ ମଉଛବ, କେତେ ହାସ୍ୟରଙ୍ଗ କରିବାକୁ କଳ୍ପନା କରୁଥିଲି,ସେ ସବୁ ଗଲା ! ମହାରାଜ ଚାଲିଯିବେ, ମୁଁ ପୁଣି ରହିବି,ଏହା ତ ମୋ ଦେହ ସହିବ ନାହିଁ । ନା, ମହାରାଜଙ୍କ ପଛ ପଛେ ମୁଁ ମଧ୍ୟ ବାଟ ଧରିବି । କିନ୍ତୁ ଏତେ କଥା ଯେ ହେଲାଣି ମୋତେ ପଦେ ସୁଦ୍ଧା ଛମୁରୁ ପଚରା ହେଲା ନାହିଁ ? କ'ଣ କରିବି, ମୋ ଅଦୃଷ୍ଟ !

କୃପାଳ ସିଂହ ମନ୍ତ୍ରୀ—ବିଦୂଷକେ !
ସଙ୍ଗରେ ଯିବାକୁ ନାସ୍ତି ନ କରନ୍ତି ଛାମୁଁ,
କିନ୍ତୁ —
ଜାଣିଛିକି ବାନପ୍ରସ୍ଥ ଦୁଃଖ—ପ୍ରସ୍ଥ ପ୍ରସ୍ଥ,
ତହିଁ ନ ମିଳିବ ରାଜହର୍ମ୍ୟ
ଭୋଜନ ସଉଖ୍ୟ ।
ନେଇଣ ତୁମ୍ଭଙ୍କୁ ରାଜା
ଘନ ଅଟବୀରେ, ତୀର୍ଥ ଆଶ୍ରମରେ ଭ୍ରମି

ପୁରାଇବେ କାହିଁ ତବ
ଗର୍ଭର ଜଠରେ ?

ବିଦୂଷକ—ମନ୍ତ୍ରୀ ମହାଶୟ ! ଆପଣ ଏତେ ବଡ ରାଜ୍ୟର ପରିଚାଳନାରେ ମନ୍ତ୍ରଣା ଦାନକରି ଏ କଥାରେ ଏପରି କହିବା ଠିକ୍ ହୋଇ ନାହିଁ । ଅମ୍ଭୁ ତ ଅବଶ୍ୟ କିଛି ଯୋଗଣର ବ୍ୟବସ୍ଥା କରିବେ, ପରନ ଅପ୍ୟାନ ତ କରିବେ ନାହିଁ । ଅନୁଗ୍ରହ ଥିଲେ ଏ ବ୍ରାହ୍ମଣର ଉଦରଟା କଣ ଅପୂର୍ଣ୍ଣ ରହୁଛି ? ତା ନୁହେଁ, ସେଥି ପାଇଁ ଚିନ୍ତା କରୁନାହିଁ, ତେବେ ମୁଁ ତ ଯିବି—ଅଭ୍ ଜଣେ କ'ଣ କରିବ ?

କୃପାଳ ସିଂହ—କିଏ ସେହି ଅଭ୍ ଜଣେ ?

ବିଦୂଷକ—ନା, ନା ଓଃ ! ସେହି ଛଇ ସମ ମୋର ବୁଢା ବ୍ରାହ୍ମଣୀଟି । ସେ ମହାସ୍ୱାଣୀ ମୋତେ ଷଣମାତ୍ର ନ ଦେଖିଲେ ଚୁଲାରେ ପାଣି ପକାଇବା ଭୁଲି ଶୁଖି ଶୁଖି ମରିଯିବ । ସେହି କଥାଟା କାଳ ହେଉଛି ।

( ମନ୍ତ୍ରୀଆଦଙ୍କ ଉଚ୍ଚହାସ୍ୟ )

ରାଜା ବିଜୟ ସିଂହ—ନା, ବୟସ୍ୟ !

ଥାଆନ୍ତୁ ଅପଣ ।
ପୁରାତନ ବିଦୂଷକ—
ରାଜହର୍ମ୍ୟେ ରହି
ନବ ରାଜା, ରାଜପୁତ୍ରୀ ସହ

କରନ୍ତୁ ଉଲ୍ଲାସ
ହାସ୍ୟରସେ ଉଲ୍ଲସିତ ମନେ ।

ବିଦୂଷକ—ମହାରାଜ ! ଜୟନ୍ତୁ ( ଉପବେଶନ ) ।

( ନର୍ତ୍ତକୀଗଣଙ୍କ ପ୍ରବେଶ ଓ ନୃତ୍ୟ ସହିତ ଗାନ )

ଦେଖଃ ସଜନୀ ମନ ମୋହନୀ
ମୋହନ ଯେନ ମାଧୁରୀ ଭରି ।
ଏ ଯେ ସୁନ୍ଦର ଜ୍ୟୋତ୍ସ୍ନା ରୁଚିର
ଆରସି ଝରି ସୁଷମା ଭରି ।
ଏ ପଦ୍ମିନୀ ମିହିର ବନ୍ଧୁ
ଗୌରବେ ସଞ୍ଚିତ୍ତ ଦସିନ୍ଧୁ—
ଜନ ଗହଳ— ପଦ୍ମ କହ୍ଲାର
ସରସୀ ପ୍ରାୟେ ସୁନ୍ଦରେ ଭରି ।
ଦେଖ ଗୋ ଯଶ ଶୋଭିଜଳ
ପ୍ରେମ ବତାସେ ଢ଼ଳ ଢ଼ଳ
ନେହ ରୁଚିର ପ୍ରୀତି ଭଣ୍ଡାର
କରେ ଯେ ଦୂର ମିଳନ ଆରି ।
ଶୁଣି ମୋହନ ବଂଶୀ ସ୍ୱନ
ଉଛନ ଗୋକୁଳ ଯେସନ
ଅଜି ସେପରି ମଗ୍ନ ଏ ପୁରୀ
ନଂଗରୀ ସ୍ତ୍ରୀଣୀ ପ୍ରେମେ ବିଭୋରି ।

କାଗାପୁଲ୍ଲନେ ବନବାଲା
ଗାଏ ମଧୁର ପ୍ରେମବୋଲା
ଚୌଦଗ ଭର                    ପ୍ରେମ ଲହରୀ
କୁସୁମାଞ୍ଜଳୀ              ( ଦଏ ) ଭରୁ ବଧୁରୀ ।

( ଗାନ ସମାପ୍ତି ପରେ ଅତର, ଫୁଲହାର ଓ ପାନ ବିତରଣ )

ବିଜୟ ହିନ୍ଦ—ସଭା ଭଙ୍ଗ କରାଯାଉ ।

( କରତାଳ ପ୍ରଦାନ )

**ଯବନିକା**



# ଷଷ୍ଠ ଅଙ୍କ

## ପ୍ରଥମ ଦୃଶ୍ୟ

ରାଜପଥ

( କେତେଜଣ ନାଗରିକ )

ପ୍ରଥମ ନାଗରିକ— ଭାଇ ! ଆଜିକାଲି କିଏ ରାଜ୍ୟ ପାଳନ କରୁଅଛନ୍ତି ? ବିଜୟ ସିଂହ ତ ତୀର୍ଥାଟନ କରିବାକୁ ବାହାରି ଗଲେ, ଏ ତାଙ୍କପରି ନିର୍ବିଘ୍ନରେ ରାଜ୍ୟ ଶାସନ କରୁଅଛନ୍ତି ନା ?

ଦ୍ୱିତୀୟ ନାଗରିକ—ହଁ ଭାଇ, ଆଜି କାଲି ସତେ ରାମ-ରାଜ୍ୟ ପରି ହୋଇ-ଗଲା । ଧର୍ମଶାଳା ଗୋଟିଏ ତିଆରି କରିଛନ୍ତି, ସେଠାରେ ଅନେକ ଲୋକ ଆଶ୍ରୟ ନେଉଛନ୍ତି ।

ତୃତୀୟ ନାଗ—କୃପାଳ ସିଂହ ମନ୍ତ୍ରୀ ଯେ ବିଜୟ ସିଂହଙ୍କ ଏକାନ୍ତ ବିଶ୍ୱାସୀ । ତାଙ୍କ ହାତରେ ରାଜ୍ୟଶାସନଭାର ଦେଇ ବୃଦ୍ଧ ରାଜା ତୀର୍ଥାଟନକୁ ବାହାରି ଗଲେ ।

ଦ୍ୱିତୀୟ ନାଗ—ଆଜି କାଲି ରାଜା ବିଜୟ ସିଂହ କେଉଁଠାରେ ଅଛନ୍ତି ଖବର ପାଇଥିଲ କି ?

ତୃତୀୟ ନାଗ—ମୁଁ ଶୁଣିଥିଲି ସେ ବାରାଣସୀବାସୀ; ସେ ଏକ ପ୍ରକାର ଉଦାସ ଭାବେ ଈଶ୍ୱର ଭଜନ କରୁଅଛନ୍ତି । ସଂସାର ପ୍ରତି ମାୟା ମମତା ତାଙ୍କ ହୃଦୟରୁ ବଦୂରିତ ହୋଇଛି ।

ଚତୁର୍ଥ ନାଗ:—ସଂସାର ପ୍ରତି ବା ବିରାଗ ନ ହେବେ କାହିଁକି ? ପୁଅ ନାହିଁ, ରାଣୀ ତ ଅନେକ ଦିନରୁ ସ୍ୱର୍ଗାରୋହଣ କରି ଅଛନ୍ତି । ସେହିଦିନୁ ସେ ଏକପ୍ରକାର ରାଜର୍ଷି । ତାହା ମୁଁ ଭଲ ଭାବରେ ଜାଣେ । ମନ୍ଦିରରୁ ପ୍ରସାଦ ନ ଗଲେ ଠା ହୁଏ ନାହିଁ । ସକାଳ ସନ୍ଧ୍ୟାରେ ହୋମ ଜପ ଆଦି କରି ସାରି ରାଜ୍ୟର ଭାର ବୁଝନ୍ତି । ସେହିଦିନୁ ସେ ବୈରାଗ୍ୟ-ଜୀବନ ଧାରଣ କରିଛନ୍ତି । ଜ୍ୟୋତ୍ସ୍ନାବାଈ ଏକମାତ୍ର ଜେମାକୁ ଜ୍ୟୋତିଃ ସିଂହଙ୍କୁ ଶବାହ ଦେଲେ । ଆଗରୁ ସେ ତୀର୍ଥକୁ ଯିବ ଯିବ କହୁଥିଲେ, ଏବେ ଚାଲିଗଲେ ।

ପ୍ରଥମ ନାଗ:—ଦୁର୍ଜ୍ଜନ ସିଂହ କି ଦୁର୍ଯୋଗ ସମୟରେ ଅସିଥିଲା । ସେ ରାଜ୍ୟରେ ପାଦ ଦେଲା ମାତ୍ରେ ଦୁର୍ଭିକ୍ଷ ସଙ୍ଗେ ସଙ୍ଗେ ରାଜ୍ୟକୁ ଗ୍ରାସ କରିବାକୁ ଆସିଗଲା । ବର୍ତ୍ତମାନ ଦେଖ ରାଜ୍ୟରେ କି ଆନନ୍ଦ ଖେଳା କରିଛି । ସେ ନରହତ୍ୟା କାହିଁ, ସେ ଗୃହ-ଦାହ କାହିଁ, ସେନାମାନଙ୍କର ଅତ୍ୟାଚାର କାହିଁ, ସେ ଦସ୍ୟୁତା କାହିଁ ? ସ୍ୱପ୍ନରେ ସୁଦ୍ଧା ଦେଖା ନାହିଁ । ଭଗବାନ ଆମ୍ଭ ରାଜା ଜ୍ୟୋତିଃ ସିଂହଙ୍କୁ ଦୀର୍ଘଜୀବୀ କରିଥାନ୍ତୁ ।

ଦ୍ୱିତୀୟ ନାଗ:—ଚାଲ ଭାଇ, ଡେରି କରନା, ରଜା ଅନ୍ନ ବସ୍ତ୍ର ଦାନ ଦେଉଅଛନ୍ତି । ଚାଲ, ଶୀଘ୍ର ଚାଲ ।

(ପ୍ରସ୍ଥାନ)

( ଗୃହିଣୀର ପ୍ରବେଶ )

ଗୃହିଣୀଙ୍କ ଗାନ

ଦୁଃସମୟ ଗଲା ଅସିଲା ସୁଦନ
କାହିଁଗଲା ସେହି ପାପିଷ୍ଠ ଦୁର୍ଜ୍ଜନ,
ଦୁର୍ଜ୍ଜନ ସିଂହକି ପାମର ଅଧମ
ଅଶାନ୍ତ ଅଧାର ହେଲା ଅନ୍ତର୍ଦ୍ଧାନ ।
ଧନ ଧାନ୍ୟେ ପୂର୍ଣ୍ଣ ବାଜରା, ଗୋଧୁମ
ସତ୍ୟ ବ୍ରତ ରାଜା ଲକ୍ଷ୍ମୀ ଆଗମନ;
ଯଶୋଲ୍ମୀର ପ୍ରଜା ରାଜପୁତଗଣ
ପ୍ରଫୁଲ୍ଲ ଅନ୍ତରେ କର ଶତ୍ରୁଗାନ ॥

( ଗାଉ ଗାଉ ପ୍ରସ୍ଥାନ )

## ପଟ୍ଟପରିବର୍ତ୍ତନ



## ଦ୍ୱିତୀୟ ଦୃଶ୍ୟ

### ନଦୀ ତୀରସ୍ଥ ଉଦ୍ୟାନ

ସମୟ—ରାତି

( ଜ୍ୟୋତିଃ ସିଂହ ଓ ଜ୍ୟୋତ୍ସ୍ନାବାଈ ଏକ ସଙ୍ଗେ ଭ୍ରମଣ କରୁ କରୁ )

ଜ୍ୟୋତିଃ ସିଂହ—ଅହା !

ବୃକ୍ଷଶୀର୍ଷ ସ୍ୱର୍ଣ୍ଣୀକୃତ ଶ୍ୟାମଳ ପଲ୍ଲବେ
ଶୋଭମୟ ଜ୍ୟୋତ୍ସ୍ନା-
ପ୍ରବାହିତ ତଟିନୀ ବକ୍ଷରେ, ଜ୍ୟୋତ୍ସ୍ନା
ସୁନ୍ଦର ସଉଧ ଦୁର୍ଗ ପ୍ରାଚୀର ଶିଖରେ
ନାଚନ୍ତି ବନ୍ଧୁ ବନ୍ଧୁ ଚନ୍ଦ୍ରାଲୋକ—
କି ସୁନ୍ଦର ଚନ୍ଦ୍ରାଲୋକ ଜ୍ୟୋତ୍ସ୍ନା !
ଆହା ! ବିଶ୍ୱସ୍ରଷ୍ଟା
ସୁନ୍ଦର କଳ୍ପନାକୃତ ସୌନ୍ଦର୍ଯ୍ୟ ମଧୂରେ—
ଭରି, ଧରିଲାଲା-ଖେଲା ।
ଉଚ୍ଛୁଳୁଛି ଆନନ୍ଦ ପ୍ରବାହ,
ସର୍ବ ଦିଗ ମଧୁମୟ,
ଅଛି ଏକ ମାତ୍ର ଗାନର ଅଭାବ ।

ଜ୍ୟୋତ୍ସ୍ନା—ଦିନେ ଏହି ଦାସୀ

କରିଥିଲା ମାନସେ କଳ୍ପନା,
ବୀଣା ସ୍ୱର ମଧୁର ସଙ୍ଗୀତ

ପ୍ରାଣଧନେ ଶୁଣାଇବ ଦନେ,
ଇଚ୍ଛା ଯେବେ, ହେବ ସୁପୂରଣ ।

ଜ୍ୟୋତିଃ ସିଂହ— ଅହା !
ଏ ବସନ୍ତ ଅନନ୍ତ ସୌନ୍ଦର୍ଯ୍ୟ ଦେଖି
ଜ୍ୟୋତ୍ସ୍ନା ! ପ୍ରିୟତମେ ! ଶତ ମନ ଚଞ୍ଚଳତ—
କି କରୁଛ, କି କହୁଛ ନାହିଁ ବାହ୍ୟ ଜ୍ଞାନ
ହୋଇଅଛ ଅସ୍ଥିର,
ଏ ଦବ୍ୟ ଶୋଭନେ—
ତଦୁପରି ଚନ୍ଦ୍ରାଲୋକେ ରମଣୀୟ ଯୋଗେ—,
ଫଣି ଜ୍ୟୋତ୍ସ୍ନା ତବ ଜ୍ୟୋତ୍ସ୍ନା
କରୁଅଛ ମମ ଧମନୀରେ
ଏକ ଅତୁଳ ଆନନ୍ଦ ଝଂକୃତ ନିକ୍ୱଣ ।

ଜ୍ୟୋତ୍ସ୍ନା—( ମନ୍ଦହାସ୍ୟେ )
ବର୍ଣ୍ଣିବା ହୋଇଲେ ଯାହା ନାଥ
ମୋତେ ବରଣୀୟା ସୁନ୍ଦରୀ ପଦରେ,
ନୋହେ ତାହା ସମୀଚୀନ କେବେ ।
ପ୍ରାଣଧବ !
ଗୃହିଁ ଥରେ ଏହି ମୁକ୍ତ ପ୍ରକୃତ ସୌନ୍ଦର୍ଯ୍ୟେ,
ଅନନ୍ତ ସୁନୀଳାକାଶୁଁ—
ବର୍ଷିଣି ଆଲୋକ
ନିପତିତ ନଦୀବକ୍ଷେ ତରଙ୍ଗେ ଚଞ୍ଚଳ

ବିଷ୍ଟୃତ ଚନ୍ଦ୍ରାଲୋକେ କରଇ ନର୍ତ୍ତନ ।
ତଦୁପରି ଶ୍ୟାମଳ ବିଟପୀ ଶାଖା
ପତ୍ରାନ୍ତରାଳରୁ—
ବିନ୍ଦୁ ବିନ୍ଦୁ ଜ୍ୟୋତିଃ ପୁଞ୍ଜ ଖଦ୍ୟୋତ ପ୍ରାୟକ
ମିଶି ଦିଶେ ଅତ୍ୟନ୍ତ ସୁନ୍ଦର ।
ସ୍ୱଭାବେ ସୁନ୍ଦରେ ଭରା
ପାର୍ବତୀୟ ଶୁଭ୍ର ପ୍ରକୃତିର ଜ୍ୟୋତିଃ,
ଚନ୍ଦ୍ର ଶୁଭ୍ର କିରଣ ପରଶି—ଏକାଧାରେ
ଏ ଯାମିନୀ ଜ୍ୟୋତ୍ସ୍ନା ମିଶି
କରେ ଶତଗୁଣେ ଉଜ୍ଜ୍ୱଳିତ ଯଥା
ନୀଳକାନ୍ତ ସଙ୍ଗେ ହୀରା
ସମୁଦ୍ଭାସମାନ ।
ଅହା ! ନିରେଖନ୍ତୁ ମହାରାଜ !
ଅନନ୍ତ ସୌନ୍ଦର୍ଯ୍ୟଭରା
ପ୍ରକୃତିର ଶାନ୍ତ ଅହ୍ଲାଦ ।

ଜ୍ୟୋତିଃ ସିଂହ—ଧନ୍ୟ ଜ୍ୟୋତ୍ସ୍ନା,
ଲଭି ତବ ଶ୍ରୀକରପଲ୍ଲବ
ମଣୁଛି ମୁଁ ମହାଭାଗ୍ୟବାନ ।
ବିଶ୍ୱପିତା ! ତବ ଅନନ୍ତ ବିରାଟ ବିଶ୍ୱ—
ବିରାଟର କିବା ଅପରୂପ ରୂପ ।
ପ୍ରକୃତି ରାଣୀର ସଙ୍ଗେ
କରେ ଶତ ଶୋଭନୀୟ କାନ୍ତ ବିବର୍ଦ୍ଧିତ ।

ଆଜ ମୋ ହୃଦୟରାଣୀ ତୁମ୍ଭେ
ଏ ବିରାଟ ଶୋଭାରେ ବିଦ୍ୟମାନ ଯେଣୁ
ତୁମ୍ଭ କାନ୍ତି ଦିଶେ ମୋତେ
ଅମୂଲ୍ୟ ଶୋଭନ ।

ଜ୍ୟୋତ୍ସ୍ନା — ନରେଶ୍ୱର !
ଶୁଣି କଲପନା ତବ
ଚିହ୍ନି ନୋହେ, କିଏ ତୁମ୍ଭେ ?
ମାନବ ନା ଦେବ ?
କ୍ଷୁଦ୍ରା ମୁହିଁ,
ତୁଚ୍ଛ, କ୍ଷଣଜନ୍ମା !
ଏ ଅଧୀନା ସଙ୍ଗେ ସମ୍ମିଳିତ କର ଯାହା—
ଅପ୍ରାପ୍ୟ ଶୋଭନ;
ପ୍ରକୃତି ରାଣୀର ସଙ୍ଗେ ନୋହେ ଏ ଅଧୀନା
ସମକକ୍ଷ ।
ମାନ ନାଥ ! ଏ ବିଶାଳ ଶୋଭା
ପ୍ରକୃତିର ମଧ୍ୟେ
ତବ ପଦ ଲାଭକରି
ମଣେ ମନେ, ମୋହ ସମ କେହୁ
ନାହିଁ ଭାଗ୍ୟବତୀ ।
ଅଧୀନାର ଗୁରୁ, ଇଷ୍ଟ, ଆରାଧ୍ୟ—
ଦେବତା,
ଅନନ୍ତ ଆପଣ ।

ସ୍ୱାମୀ ।
ତବ ପଦ ସେବା ବିନୁ
ଏହୁ ରାଜପଦ, ରାଜ୍ୟ, ଧନ, ପ୍ରାଣେ
ନାହିଁ ମୂଲ୍ୟ, ଅଟେ—
ଅତି ତୁଚ୍ଛ ମାନ ।

( ବୀଣା ହସ୍ତରେ ନେଇ ଜ୍ୟୋତ୍ସ୍ନାର ଗାନ । )

କାତ୍ୟ, ମାନସ ହୁଏ— ବିଚ୍ଛେଦ କୋହ ( ସଦା )
ଗୃହିଁ ଥିବ ନେତ୍ରଦ୍ୱୟେ ।

ଏ ଯେ ମାନସ— ନାହିଁ ସନ୍ତୋଷ
ସନ୍ତାପ ହୃଦୟ ଅନ୍ତରହେ ।

ଦେଖି ପଲେ ପଲେ ତେବେ ନ ମେଣ୍ଟେ ଆଶ
ସର୍ବଦା ବିରହେ କରି ହା ହୁତାଶ ।
ପଡୁ ପଡୁ କରେ ନ ଘଟେ ଭାଗ୍ୟରେ
ମିଳନର ଆଶା ମେଣ୍ଟି ନ ଯାଏ ।

ଇଚ୍ଛାହୁଏ ହୃଦ ମଧ୍ୟରେ ରଖିବି
ଯୁଗେ ଯୁଗେ ନେତ୍ର ପୂରାଇ ଦେଖିବି
ନ ମେଣ୍ଟେ ସେ ଅଶ, ନ ପୁରେ ମାନସ
ଛାୟାସମ ବହୁ ଭାସି ସେ ଯାଏ ।

ଜ୍ୟୋତ୍ସ୍ନା—ପ୍ରାଣେଶ୍ୱର !
ଏ ଅଧୀନା ଦାସୀ
ଅଟେ ତବ ସଦା ଅନୁଗତ
ତବ ଦୁଃଖ ସୁଖ ଫଳ—
ଭାଗୀ ସତତରେ ।

ଜ୍ୟୋତଃ ସିଂହ—( ଅଲଙ୍ଗନୋଦ୍ୟତେ )
ପ୍ରିୟତମା ! ଜ୍ୟୋତ୍ସ୍ନା !
ରଜନୀ ଅଧିକ ହୁଏ
ଚାଲ ପ୍ରିୟେ ଯିବା ଭବନକୁ—
ଯାମିନୀ ଯାପିବା ବସି ଆପଣା ଦୁର୍ଗରେ !

( ଜ୍ୟୋତଃ ସିଂହ, ଜ୍ୟୋତ୍ସ୍ନା ବାଈର ହସ୍ତ ଧାରଣ କରିବା, ସ୍ନେହରେ ହସ୍ତ ଅଘ୍ରାଣ କରିବା, ଉଭୟେ ସ୍ନେହସମ୍ଭାଷିତ ସମୟେ ସଖୀମାନଙ୍କର ଗାନ ଗାଇ ଗାଇ ପ୍ରବେଶ )

( ଗାନ )

ଦେଖ ଲୋ ସଜନ, ଶଶୀ କୁମୁଦନୀ
ଯୁଗଳ ମିଳନ କେତେ ଶୋଭା କରେ ।

ଆସ ଲୋ ସକଳେ ମଞ୍ଜୁ ଫୁଲମାଳେ
ସାଜିବା ଦୁହିଁଙ୍କି ଅତି ଭକ୍ତିଭରେ,
ସାଜିବା ଦୁହିଁଙ୍କି ଅତି ସ୍ନେହଭରେ ॥

ଭ୍ରମ ହୁଏ ସଖି, ଦେଖି ଏହୁ ଛବି
କି ଅବା ସ୍ୱର୍ଗରେ ଇନ୍ଦ୍ର ଶଚୀ ଦେବୀ
କାମ ରତି କିଣି ତାଙ୍କ ଦିବ୍ୟରୂପ ବେନି
ଗୃହିଁଲା ମାତ୍ରକେ ସଖୀ ମନ ହରେ ॥

ହେ ପରମେଶ୍ୱର, କରୁଣାନିଧାନ
କରନ୍ତୁ ଉଭୟେ ଅଭୟ ପ୍ରଦାନ ।
ଦିବ୍ୟ ସୁଖ ପାଇ ସଦାନନ୍ଦେ ଦୁହେଁ ଥାଇ
କରନ୍ତୁ ବିଜୟ ସେ ଭୂମି ବରେ ॥

(ଗାନ ପରେ ସଖୀମାନେ ଉଭୟଙ୍କୁ ପୁଷ୍ପହାର ଦେବା ସମୟେ ପଟ୍ଟପତନ)

**ଯ-ବ-ନି-କା—ପ-ତ-ନ ।**

ସମାପ୍ତ



କଟକ ସତ୍ୟବାଦୀ ପ୍ରେସରେ ଶ୍ରୀ ରଘୁନାଥ ରଥଙ୍କଦ୍ୱାରା ମୁଦ୍ରିତ ୧୯୩୩

